ଶୃଙ୍ଖଳ ମାତ୍ରକେ ମିଶିଲେ । ମନ ମାଣିକ୍ୟ ଭେଟ ହେଲେ ॥
ରଘୁରତନ ଦେବ କରି । ଅଇଲେ ସବୁଜନ୍ମ ପାରି ॥
ଗୁହାରି କରିବୁଁ କାହାକୁ । ଏ ସିନା ଭଣ୍ଡିଲେ ଆମ୍ଭଙ୍କୁ ॥
ସୁରଭି ରତ୍ନ ଦେଲେ ନେଇ । ଭେଣ୍ଡି ଛନ୍ଦନେହ ସୁନା ପାଇ ॥
ସେ ଏବେ ହୋଇଲା ପିତଳ । ଆମ୍ଭର ପରଶ ଅମୂଲ୍ୟ ॥
ଏଡ଼େ ପଦାର୍ଥ ଏଡ଼େ ମିଛେ । କମ୍ପା ପକାଇଲେ ପ୍ରତ୍ୟକ୍ଷେ ॥
ଏହାଙ୍କ ରୂଲେ ନ୍ୟାୟ କରି । ସଭାକୁ ଘେନ ସ୍ଥିର ଧରି ॥
ନୋହିଲେ କୃଷ୍ଣଙ୍କୁ ଭେଟାଉ । ଅଧିକେ ନଟ ନାହିଁ ଆଉ ॥
ଯେବେ ନ ପାରିଲୁ ଭେଟାଇ । ମନକୁ ଆଣ ଲେଉଟାଇ ॥
ମନ ଯେ ତୋହର ସଙ୍ଗତେ । ପଡ଼ିଲା ଗୋବିନ୍ଦ ଆୟତ୍ତେ ॥
ଯେ ଯେଡ଼େ ଲୋକ ସଙ୍ଗେ ଥାଇ । ତା ଦୋଷ ଗୁଣ ସେ ଲଭଇ ॥

× × ×

□□□

ଉପେନ୍ଦ୍ର ଭଞ୍ଜ

## ଦଶରଥଙ୍କ ପ୍ରସ୍ତାବ

( ବୈଦେହୀଶବିଳାସ : ସପ୍ତଦଶ ଛାନ୍ଦ )

( ରାଗ—ଧନାଶ୍ରୀ )

ବସି ବଶିଷ୍ଠ ଜାବାଲି ବାମଦେବ କାଶ୍ୟପ ସୁମନ୍ତ୍ର ଘେନି ।
ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବ ରାଜଧାନୀ ।
ବୀରବୃନ୍ଦରେ ଇନ୍ଦ୍ର, ବସୁ ନୃପପଦେ ରାମଚନ୍ଦ୍ର ।୧।

ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡେ କାହିଁଛୁ ଆଉ ମୋ ତନୟ ସରି ।
ବାମେ ବାମଦେବ ଧନୁକୁ ଭାଙ୍ଗିଲା ବାମେ ଭୃଗୁପତି ହାରି ।
ବସୁପତି ସମସ୍ତ, ବସି ସେବିବେ ସେବକମତ ।୨।

ବୋଇଲେ ସୁମନ୍ତ୍ର ସେ ପୁଣି ଏମନ୍ତ ଶୁଝିବେଟି ପିତୃଋଣ ।
ବଧକାରକ ଅନରଣ୍ୟ ରାଜାର ବଧରେ ହେବେ ନିଋଣ ।
ବେଧାବିଧାନ ପୁଣି, ବୈବସ୍ୱତବଂଶୀ ତୋଷ ଶୁଣି ।୩।

ବୁଝିଲେ ଲଗ୍ନ ମଗ୍ନ ହୋଇ ସୂଚିଲେ ମଙ୍ଗଳ ଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବଳସୀ ନୃପତି ହୋଇବେ କେହି ।
ବାମଦେବ ଉତ୍ତର, ବକ୍ତା ବଶିଷ୍ଠ ହେବେ ଈଶ୍ୱର ।୪।

ବିଷେ କି ସୂକ୍ଷ୍ମ ବୃତ୍ତ ପାର୍ଶ୍ୱେ କହିଲେ ହେବେ ଦିବ୍ୟଭୂତଭୋଗୀ ।
ବୈଶ୍ରବଣକୁ ଜିଣିବେ ପୁଷ୍ପକ ମଣ୍ଡନେ ହୋଇ ସରାଗୀ ।
ବୋଲୁଅଛୁଁ ଏମନ୍ତ, ବୋଧ ନରଦେବଦେବ ଚିତ୍ତ ।୫।

ବାର୍ତ୍ତା ପାଇ ମାତାମାନେ ହରଷିତା ସୀତା ତୋଷ ନୁହେ କହି ।
ବିଧୁ ଦର୍ଶନେ ଯଥା ସିନ୍ଧୁ କଲ୍ଲୋଳ ଅଧିକରେ ଲୋଳ ବହି ।
ବେଶ ଅଭିଷେକର, ବେଳେ ଦେଖି ହେବା ସେ ପ୍ରକାର ।୬।

ବିସ୍ତରନ୍ତି ତହିଁ ରାଉତ ମାହୁନ୍ତ ରଥୀ ପଦାତିଏ ମିଶି ।
ବସିଲେ ରାମ ସିଂହାସନେ ଦ୍ୱିଗୁଣେ ଆମ୍ଭ ଗୁଣେ ଯିବେ ଦିଶି ।
ବିବେକ ଏ ପ୍ରକାର, ବଡ଼ ସୁଖ ଜନ୍ମୁଛି ଆମ୍ଭର ।୭।

ବନ୍ଦୀ କେରଳ ଇତ୍ୟାଦି ଭିଷ୍ଟ ମେଳ ଭାବ ମାଗି ନ ଜାଣିବା ।
ବ୍ରାହ୍ମଣକୁଳର ଆକୁଳ ତୁଟିଲା ଇଷିତେ ଯାଜ୍ଞିକ ହେବା ।
ବିନା ପୂଜା ଦେବତା, ବିଗ୍ରହଲେ ହୋଇବା ପୂଜିତା ।୮।

ବଲ୍କବେ ପାଷ୍ଟିଲେ ସୁଲଭେ ଧେନୁ ଯେ ହେବେ ଆମ୍ଭ କ୍ଷୀରବତୀ ।
ବାଦବାଦ ଦେବେ ଆମ୍ଭ ବାଦୀ ଏବେ ନାଶ ନୋହିଲା ଏ ମତି ।
ବ୍ରହ୍ମା ସମୀପେ ଗଲେ, ବିଭ୍ରମ ସେ କୈକେୟୀଙ୍କି କଲେ ।୯।

ବିପଣୀରେ ଶୁଣି ରାମ ରାଜାବାଣୀ ବାହୁଡ଼େ ମନ୍ଥରା ତ୍ୱରା ।
ବାରି ଭରିଅଛି ନୟନଯୁଗଳେ ଗଲେ ପ୍ରାଣ ଥିଲା ପରା ।
ବୃକ୍ଷ କାଟିଲା ପ୍ରାୟେ, ବିପତିତ ତା ଅଗ୍ରତେ ହୁଏ ।୧୦।

ବୋଇଲା କେକେ ଏ କି ଭରତ-ଜନନୀ କହୁଅଛୁ ତହୁଁ ଜବ ।
ବଡ଼ ସୁଭାଗୀ ବୋଲାଉ ରେ ଶୋଭାଙ୍ଗୀ ଭାଙ୍ଗିଗଲା ତୋ ଗରବ ।
ବେର କି ହୁଏ ତୋର, ବିଷ ପ୍ରାୟେ ଯାରେ ମୋ ଶରୀର ।୧୧।

ବିବେକୀ ଧାର୍ମିକ ଶୋଭାପ୍ରଶଂସାରେ ସଂସାରେ ଜଣେ ନ ଗଣ ।
ବାହୁଟି ଯାହାର ବଜ୍ରରୁ ଅଧିକ କି ବର୍ଣ୍ଣିବା ତାର ବାଣ ।
ବନ୍ଦିତ ସେ ନନ୍ଦନ, ବୋଲିବୁ ବା ବୟସରେ ସାନ ।୧୨।

ବଳିଷ୍ଠ ଦାନବେ ପୂର୍ବଦେବ କହି ଅନୁଜ ଦେବତା ଇନ୍ଦ୍ର ।
ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି କେହି ହୋଇନାହିଁ ସାନ୍ଦ୍ର ।
ବିସା କରି ନୃପତି, ବୁଝି ଥିଲେ ବୋଧ କ୍ଷିତିପତି ।୧୩।

ବିହ୍ୱଳିତ ମଥ କରତବେ ଅହଲ୍ୟା ଦୂଷଣ ଲଭିଲି ପର ।
ବଦ୍ଧନ ମାଡ଼ି ଶମ୍ବନ ସଦନରେ ନୟନରେ ପୂରି ବାର ।
ବିଜେ ନୃପ ଏ କାଳେ । ବନ୍ଧୁ ବନ୍ଧୁ ବୋଲିଣ ଡାକିଲେ ।୧୪।
ବିଷବୈଦ୍ୟ ପଦ ନ ମାନିଲି ପ୍ରାୟେ ସ୍ୱଭାବେ ଭୋଗିନୀ ସେହି ।
ବହ୍ନି ସେନେହରେ ପତଙ୍ଗ ପ୍ରକାରେ ପାଶେ ପରବେଶ ତହିଁ ।
ବୋଧେ ଚିବୁକ ଧରି, ବିନାଦୋଷେ ପ୍ରଣୟିନ ଗୋର ।୧୫।

□□□

ଲୋକନାଥ ବିଦ୍ୟାଧର

# ନାରଦ ମହର୍ଷିଙ୍କ ସମ୍ବାଦ

( ସର୍ବାଙ୍ଗସୁନ୍ଦରୀ : ଚତୁର୍ଥ ଛାନ୍ଦ )

( ରାଗ—କେଦାର )

ଏକ ଦିନେ ନାରଦ ମହାଋଷି । ସେହି ନଗ୍ରେ ପ୍ରବେଶ ହେଲେ ଆସି ।୧।
ତାଙ୍କୁ ଦେଖିଣ ପୁଷ୍ପଧନୁ ରାଜା । ଗୁରୁ ଗୋବିନ୍ଦ ପାଦେ କଲେ ପୂଜା ।୨।
ଗଙ୍ଗା ସଲିଳେ ଚରଣ ଧୋଇଲି । ପାଦଉଦକ ଗର୍ଭକୁ କ୍ଷେପିଲି ।୩।
ରତ୍ନପଲଙ୍କେ ବସାଇ ତୁରିତେ । ବେନି କର ଯୋଡ଼ି ଉଭା ପୁରତେ ।୪।
ତାର ଦୁହିତାକୁ ଘେନି ଭୂପାଳ । ଆସି ପ୍ରଣାମ କଲି ପାଦତଳ ।୫।
ମୁନି-ମୁକୁଟମଣି ଏ କନ୍ୟାକୁ । କହ ପ୍ରଦାନ କରିବି କାହାକୁ ।୬।
ଶୁଣି ବୋଲନ୍ତି ଶୁଣ ନୃପବର । ଏହି ଦିନୁ ହୁଅଟି ତତପର ।୭।
ଏହି ଆଗତ ମାଧବ ମାସରେ । ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାରେ ।୮।
ସ୍ୱୟମ୍ବର କରିବ ତୋ ଆତ୍ମଜା । ଶୁଣି ଆସିବେ ଛପନପୁର ରାଜା ।୯।
ମୁଁ ତ ଯାଉଛି ଆଜହୁଁ ମର୍ତ୍ତ୍ୟରୁ । ସ୍ୱର୍ଗଲୋକେ ଜାଣିମେ ମୋହଠାରୁ ।୧୦।
ଏହା ଶୁଣି ସେ ପୁଷ୍ପଧନୁ ରାଜା । ଶିରକମଳେ ପାଦ କଲା ପୂଜା ।୧୧।
କିସ କହିବି ତୁମ୍ଭରେ ତୁମ୍ଭର । ତୁମ୍ଭେ ଅନ୍ତରଯାମୀ ଯୋଗେଶ୍ୱର ।୧୨।
ଏତେ ଶୁଣି ସେ ମୁନୀନ୍ଦ୍ର ମୁକୁଟ । ତାକୁ ଚାହିଁ ଦେଖିଲେ ଚିତ୍ରପଟ ।୧୩।
ଲେଖାହୋଇଛି ଦର୍ଶନେ ନୟନେ । ବିଷ୍ଣୁ ସଙ୍ଗେ ରଖିଲେ ସ୍ଥିରମନେ ।୧୪।

ପର ଦେଖାଇବାକୁ ପଟ ଲେଖି । ନେଲେ ଅଞ୍ଜନ-ତୂଳାରଶି ଶିଖୀ ।୧୫।
ଇନ୍ଦ୍ର ସଦନେ ହୋଇଲେ ପ୍ରବେଶ । ଦେଖି ପ୍ରଣାମ କଲେ ଅମରେଶ ।୧୬।
ଦିବ୍ୟ ଆସନ ଉପରେ ବସାଇ । ତାଙ୍କୁ କହନ୍ତି ହୋଇଣ ବନସ୍ତୀ ।୧୭।
କାହିଁ ଥିଲ କସ କହ ବାରତ୍ତା । ଭୂତ ଭବିଷ୍ୟ ବର୍ତ୍ତମାନଜ୍ଞାତା ।୧୮।
ଯେବେ ଅମର ଅଧିପ ଦଇନା । ପଟ ପ୍ରକାଶ କଲେ ମହାମୁନି ।୧୯।
ପଟେ ଦେଖି ସେ ସୁନ୍ଦରୀ ରୂପକୁ । ସ୍ତୁତ କଲେ ସହସ୍ରାକ୍ଷ ଧାତାଙ୍କୁ ।୨୦।
କ୍ଷଣେ ପର୍ଯ୍ୟନ୍ତେ ହୋଇଣ ସ୍ତମ୍ଭିତ । ବୋଲେ ଧନ ଏ କାହାର ଯୋଷିତ ।୨୧।
ରମା ରତି ଶଚୀ ରମ୍ଭା ଗଉରୀ । କେହି ଏହା ରୂପକୁ ନୋହେ ସରି ।୨୨।
ଏ କେ କହ କଲହପ୍ରିୟ ମୁନି । ଏ କି ବିଷ୍ଣୁ ସଦାଶିବ ମୋହନୀ ।୨୩।
ପୁଣି ବୋଇଲେ ଏ କାହା ଦୁହିତା । ଏହା ଜନମ ଜାଣି ହୈମବତୀ ।୨୪।
ଜନ୍ମତୁ କେ ପତି ମନ ମୋହିଲେ । ସତ୍ୟ କରାଇ ଅର୍ଦ୍ଧଅଙ୍ଗ ହେଲେ ।୨୫।
ଆଉ କାହାକୁ ଅବା ଦେବା ଲକ୍ଷି । ଏହା ସମ ଦେଖିନାହିଁ ମୋ ଆଖି ।୨୬।
ତାର ମନ ଜାଣି କହନ୍ତି ମୁନି । ଏ ଯେ ରାଣୀ ରସବତୀ ନନ୍ଦନୀ ।୨୭।
ପିତା ନାମ ପୁଷ୍ପଧନୁ ରାଜନ । ମୁଁ ଯେ ଜାଣଇ ଏହା ବର୍ଣ୍ଣଦନ ।୨୮।
ଏହି ଆଗତ ମାଧବ ମାସରେ । ଶୀତପକ୍ଷ ପଞ୍ଚମୀ ଗୁରୁବାରେ ।୨୯।
ତିନି ଭୁବନ ସକଳ ନରେଶ । ତାର ପୁରରେ ହୋଇବେ ପରବେଶ ।୩୦।
ଇନ୍ଦ୍ରାବର ବଶବ ରାମାବର । ଏତେ କହି ଚଳିଲେ ମୁନିବର ।୩୧।
ଚିତ୍ରପଟକୁ ଯେବେ ନିଜ କରି । ଇନ୍ଦ୍ର ପାଇଲେ ବିରହ ବିକାର ।୩୨।
ଯାଇ ନନ୍ଦନବନ ଏକ ଦେଶେ । ମନ୍ଦାକିନୀ କୂଳେ କାମସନ୍ତ୍ରାସେ ।୩୩।
ସରସିଜ ଦଳତଳେ ଶୟନ । କରି ଚିନ୍ତନ୍ତି ନାରୀରତନ ।୩୪।
ସ୍ୱୟମ୍ବର ଦିନ ସିନା ଚଳିବେ । ଚିନ୍ତା କରି ରହିଲେ ସେହିଠାବେ ।୩୫।
ଏକଦିନେ ବ୍ରହ୍ମାଙ୍କର ବାହନ । ବଂଶ ଉଦ୍ଭବ ଏ ହଂସରାଜନ ।୩୬।
ମାନସରରୁ ଆକାଶ-ଗଙ୍ଗାକୁ । ଆସି ସେଠାରେ ଦେଖିଲା ଇନ୍ଦ୍ରଙ୍କୁ ।୩୭।
କରେ ଧରିଛୁ ଗୃହୁ ଚିତ୍ରପଟ । ପଦ୍ମଶଯ୍ୟେ ଦ୍ରୁଏ ଛଟପଟ ।୩୮।
ତାହା ଦେଖି ପଚାରିଲା ଜଣକୁ । ସେହି କାହୁଁ ଜାଣିଲା ଚରିତକୁ ।୩୯।
ମନେ ବିଚାରଇ ସାରସଭୂପ । ଦେଖି ଦେଖିବା ସୁନ୍ଦରୀ ସ୍ୱରୂପ ।୪୦।
ଏତେ ବିଚାରି ଚଳିଲା ସତ୍ୱରେ । ହେଲା ରସତରଙ୍ଗ କଟକରେ ।୪୧।
ପଦ୍ମପତ୍ରେ ଲୁଚିଇ ଶରୀରକୁ । ସ୍ନାନକାଳେ ଦେଖିଲା ପ୍ରମଦାକୁ ।୪୨।
ମନେ ବିଚାରଇ ଶ୍ୱେତଗରୁତ । ଏହା ଶରୀର ଅତି ଅଦଭୁତ ।୪୩।
ବ୍ରହ୍ମଲୋକୁ ପାତାଳ ଯାଏ ମୋର । ନାହିଁ ଦେଖିଲି ଏମନ୍ତ ସୁନ୍ଦର ।୪୪।
ନେତ୍ର କୃତାର୍ଥ କଲି ଦରଶନେ । ପୁଣ ବିଚାର ହେଉଅଛି ମନେ ।୪୫।
ଏହା ରୂପ କଲା ଯେଉଁ ବିରଞ୍ଚି । ସେହି ସମାନେ ପତି ଥିବ ରଚି ।୪୬।

ସ୍ୱର୍ଗ ପାତାଳେ ମୁଁ ତ ଦେଖି ନାହିଁ । ହେ ହିଁ ଜନମିଥିବ ଏହି ମହୀ ।୪୭।
ତାର ଦେଖିବା ବଦନମଣ୍ଡଳ । ପକ୍ଷୀଜନ୍ମକୁ କରିବା ସଫଳ ।୪୮।
ଏତେ ବିଚାରି ଉଡ଼ିଲା ସତ୍ୱରେ । ପରବେଶ ରତ୍ନମାଳା ପୁରେ ।୪୯।
ଅବ୍‌ଜଭୂଷଣ ରାଗ-ପଦଧର । କବି ଲୋକନାଥଙ୍କୁ ରକ୍ଷା କର ।୫୦।

□□□

ବିଶ୍ୱନାଥ ଖୁଣ୍ଟିଆ

## ଲବ-କୁଶଙ୍କ ରାମାୟଣଗାନ

( ବିଚିତ୍ର ରାମାୟଣ )

( ରାଗ—ବରାଡ଼ି )

ଋଷ୍ୟଶୃଙ୍ଗ ଚରୁ ଦେବା ରାମଂ ଜନମ ହୋଇବା,
କଉଶିକ ମାଗି ନେଇଯିବା,
ପଥେ ତାଡ଼କା ମାରିବା, ମାରୀଚ ଉଡ଼ାଇଦେବା,
ଯାଗ ରଖି ଅହଲ୍ୟା କରିବା ସେ, ସର୍ବଜନ,
ଶୁଣନ୍ତୁ ଆନନ୍ଦ ହୋଇ ମନ, ସବୁରି ଅଶ୍ରୁ ପତନ,
ସ୍ଥଳରେ ତନୁରୁହମାନ, ଶୁଣି ତାଙ୍କ ବିଚିତ୍ର ଗାୟନ, ସେ ।୧।
ତାରି ଗଉତମ-ନାରୀ, ଜାହ୍ନବୀ ହୋଇଲେ ପାରି,
ମିଥିଳାରେ କଲେ ଧନୁଭଙ୍ଗ,
ଜାନକୀ ବିଭା ହୋଇବା, ବାହୁଡ଼ାବଳେ କରିବା,
ପଥେ ଭେଟି ପର୍ଶୁରାମ ସଙ୍ଗ ସେ ।୨।
ଚୂର୍ଣ୍ଣକରି ତାଙ୍କ ଗର୍ବ, ଅଯୋଧ୍ୟା ପ୍ରବେଶ ସର୍ବ,
ପିତା-ସତ୍ୟ ରଖି ବନେ ଗଲେ,
କରିଣ ବିରାଧ ନାଶ, ବୁଲିଣ ତେର ବରଷ,
ପଞ୍ଚବଟୀରେ ଆଶ୍ରମ କଲେ ସେ ।୩।

ଛେଦ ଅସୁରୀ ଶ୍ରବଣ, ଖର ଦୂଷଣ ମରଣ,
ମାୟାମୃଗ ଦେଖାଇ ରାବଣ,
କଲକ ସୀତାହରଣ, ଜଟାୟୁ ହେଲା କାରଣ,
ସୁଗ୍ରୀବ ସଙ୍ଗରେ ମିତ୍ରପଣ ସେ ।୪।
ସୁଗ୍ରୀବେ ପରୀକ୍ଷା ଦେବା, ସପତଶାଳ ଛେଦବା,
ବାଳି ମାରି ସୁଗ୍ରୀବ ସ୍ଥାପିବା,
ହନୁ ସମୁଦ୍ର ଡେଇଁବା, ଲଙ୍କାରେ ସୀତା ଖୋଜିବା,
ଲଙ୍କା ପୋଡ଼ି ଅକ୍ଷୟ ମାରିବା ସେ ।୫।
ବାହୁଡ଼ି ଦେଲେ ବାରତା, ସୁଗ୍ରୀବ ରାମ କୁପିତା,
ସାଗରେ ସେତୁ ବନ୍ଧନ କଲେ,
ଋକ୍ଷ କପି ଚାଲି ଗଲେ ସୁବଳ ଗିରି ରହିଲେ,
ଲଙ୍କାଗଡ଼ ବେଢ଼ିଣ ଯୁଝିଲେ ସେ ।୬।
ହୋଇଲା ଅନେକ ରଣ, ମାଇଲେ ଅସୁରଗଣ,
ପୁତ୍ର ଭ୍ରାତ ସହିତେ ରାବଣ,
ଶାନ୍ତି ଦେଇ ବିଭୀଷଣ, ବାହୁଡ଼ିଣ ରାମରାଣ,
ଅଯୋଧ୍ୟାରେ କଲେ ରାଜପଣ ସେ ।୭।
ଜନମୁଖେ ଅପଯଶ, ଶୁଣି ସୀତାଙ୍କୁ ନିବାସ
ବାଲମୀକ ଆଶ୍ରମର ପାଶ,
ଲବଣ ଅର୍ଥେ ବିଦ୍ୱେଷ ଶତ୍ରୁଘ୍ନ ପରବେଶ,
ସେ ନିଶି ଜନମ ଲବ-କୁଶ ସେ ।୮।
ଶୂଦ୍ର ତପୀକି ମାରିବା, ଅଶ୍ୱମେଧ ତ କରିବା,
ଆପଣା ଚରିତ ଶୁଆଇବା,
ଲବ କୁଶ ତ ପାଇବା, ବଇଦେହୀ ଅଣାଇଁବା,
ଦେବୀ ପୃଥ୍ୱୀରେ ଗୋପ୍ୟ ହୋଇବା ସେ ।୯।
ମହୀକ କରନ୍ତେ କ୍ରୋଧ, ବୋଧିଲେ ସବୁ ବିବୁଧ,
କାଳଦୂତେ ଆସି କଲା ଭେଦ,
ଲକ୍ଷ୍ମଣଙ୍କ ଅପରାଧ, କରନ୍ତେ ନକଲେ ବଧ,
ତେଜନ୍ତେ ସେ ଗଲେ ବିଷ୍ଣୁପଦ ସେ ।୧୦।
ପୂର୍ବ ପଶ୍ଚିମ ଉତ୍ତର, ଦକ୍ଷିଣ ଦେଶ ଆବର
ପୁତ୍ରମାନଙ୍କୁ କଲେ ନୃପତି,
ଅଯୋଧ୍ୟାରେ ଯେତେ ନର, ବୃକ୍ଷ ପାଷାଣ ଆବର,
ବଇକୁଣ୍ଠ ନେଲେ ରଘୁପତି ସେ ।୧୧।

ଏମନ୍ତ ରାମଚରିତ, ଗାଇ ଲବ-କୁଶ ଗୀତ,
ସଭାଜନେ ଶୁଣିଣ ଚକିତ,
ଯା' ନାମେ ହରେ ଦୁରିତ, ଅଦ୍ଭୁତ ଏଁହି ଚରିତ
ଦୀନ ବଶୀ ଘୋଷେ ଅବିରତ ଯେ ।୧୨।

□□□

ବ୍ରଜନାଥ ବଡ଼ଜେନା

# ସମର ପ୍ରସ୍ତୁତ

( ସମର ତରଙ୍ଗ )

( ରାଗ--ପାହାଡ଼ିଆ କେଦାର )

ସାରି ଫଉଜ ହେଲେ ତୟାର ମୁସଦ୍ଦମୁଦ୍ଧା ହେଲେ ବାହାର
ପାଗାସୁଆର କି ଜମାଦାର କି ସରଦାର ଯେ ।
ଯେ ଯାହା ମୁରାତମା ସମ୍ଭାର ଦୌଲତ ଯେନ ହେଲେ ହାଜର
ମଜୁରି କରି ହୁକୁମା ପାଇ ଯାନ୍ତି ସତ୍ୱର ଯେ ।
କେହ୍ନୁ ଚଢ଼ିଛି ତାଜି ବାଜୀ ଉପର ଯେ,
ରଙ୍ଗ ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ ।
ଢାଲେକ ପୂରି ବାମ ହାତରେ ଭାଲ କଷିଛି ଦକ୍ଷିଣ କରେ
ଲାଲପଗଡ଼ି ଭଲ ମାନିଛି ଶିରକୁ ତାର ଯେ ।୧।
କେ ଅଛି କଛି ବାଜୀକି ଚଢ଼ି ଧରି ନେଉଛି ଯୋଡ଼ିକ ଘୋଡ଼ି
ଇଶାରି କଲେ ମଷ୍ଟକ ଗ୍ରୁଡ଼ି ଯିବ ସେ ଉଡ଼ି ଯେ ।
କେହ୍ନୁ ତୁରୁକି ପିଠିରେ ବସି ଢାଲ ବରଛି ଧରିଛି କଷି
କଣ୍ଠରେ ନଣ ଦେଇଛି ଖୋସି ଲମ୍ବିଛି ଦାଢ଼ି ଯେ ।
କେହ୍ନୁ ସୁଆର ହୋଇ ଅଣଆନ୍ଦୁଷ ଯେ,
ଯେତେ ସମ୍ଭାଳିଲେ ସେ ନୋହେ ସ୍ଥିକତ ଯେ ।

ଫୁ ଫୁ ଶବଦ ମୁଖୁଁ ବାହାର          ବିଜୁଳି ପରି ଚରଣ ତାର
ହୁଅନ୍ତେ ଚୁଚୁକାର ପିଠିରେ ଠକୁଛି କର ଯେ । ୨ ।
ଚାଲ ଚଲାଙ୍ଗ ଚାଲୁଛି କେହି          କାହା ଝାଙ୍ଗଣ ଯାଉଛି ବନ୍ଧ
କେ ଘୋଡ଼ୀ ଅଡ଼ା ରହନ୍ତେ ଲେଡ଼ ଯୋଡ଼ ଲଗାଇ ଯେ ।
କେଉଁଠି ଚାଲେ ଦୁଇ ଗୋଡ଼ରେ          ସୁଆର ଖସି ପଡ଼ିବା ଡରେ
କଣ୍ଠକୁ ଭିଡ଼ି ଧରି ଦୃଢ଼ରେ ସମ୍ଭାଳି ରହି ସେ ।
କାହା ଘୋଡ଼ା ଘୋଡ଼ୀକି ଦେଖି ଆଗରେ ଯେ,
ମଧ୍ୟେ ମିଶି ଆସନ୍ତେ ଅତି ବେଗରେ ଯେ ।
ବାଗ ହାତକୁ ଅଳପ ମୋଡ଼ି          ଆଡ଼େ ସଳଖେ ଲଗାନ୍ତେ ଲେଡ଼ି
ପବନ ପରି ଗଲା ସେ ଉଡ଼ି ସେହି ଲଗରେ ଯେ । ୩ ।
କାହା ହ୍ରେଷାର ସ୍ୱନେ ସଂସାର,          କମ୍ପି ଉଠୁଛି କେହି ବିସାର
ଫରି ଛଟକେ କେ ବାଜୀ ଗାର ପରି ଗତିରେ ଯେ ।
ଜଳ ଭଉଁରି ପରି କେ ଖରେ          ଫେରି ପଡ଼ଇ ଅତି ପ୍ରଖରେ
ବାମ ଦକ୍ଷିଣେ କରଇ ଗତି ଦୁଷ୍ଟ ମତିରେ ଯେ ।
କେହି ନାଚୁଆ ପରି ଦିଶେ ଗତିରେ ଯେ,
କାହା ଚରଣ ଅସ୍ଥ ନୋହେ କ୍ଷିତିରେ ଯେ ।
କେ ବଙ୍କେ ଆସେ ଗ୍ରୀବାକୁ ମୋଡ଼ି          ଡେଇଁଯାଉଛି ଯୋଡ଼କ ଯୋଡ଼ି
କେ ସ୍ରୋତ ନଦୀ ନାବ ପରିସ୍ଥେ ଚାଲ ଗତିରେ ଯେ ।୪।
ଅତ୍ୟନ୍ତ ମତ୍ତ ମାତଙ୍ଗକୁଳ          ଚଳନ୍ତି ଧୀରେ ହୋଇ ପ୍ରବଳ
କି ସେ ପ୍ରଚଳ ପର୍ବତମାଳ ମାଳ ସଂକୁଳ ଯେ ।
କିବା ଧରଣୀ ତରୁଣୀ ନୀଳ          ଦୁକୂଳ ପିନ୍ଧି ଦିଶେ ମଞ୍ଜୁଳ
କି ସେ ଆକାଶୁ ଛିଡ଼ିପଡ଼ୁଛି ଜଳଦଜାଳ ଯେ ।
ଏହି ସମୟେ ମଦଜଳ ବରଷେ ଯେ,
ଅବଲୋକନେ ଆଶ୍ୱସୁଛି ମାନସେ ଯେ ।
ପୁଣି କି ସିନ୍ଧୁ ମନ୍ଥିଲେ ଦେବେ          ସିନ୍ଧୁର କୁଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁଅଛନ୍ତି ଅତି ହରଷେ ଯେ । ୫ ।
କେଉଁ ହସ୍ତୀକି ମୋତି ଝାଲର          ମାନଛି କାହା ମୁଣ୍ଡେ ସିନ୍ଦୂର
ଘଣ୍ଟି ଘାଗୁଡ଼ି କାହାର ଥୋରହସ୍ତ ବିଚିତ୍ର ଯେ ।
ପ୍ରବଳ ଭୃଙ୍ଗ କେଉଁ ମାତଙ୍ଗ          ରଙ୍ଗ ସଜରେ ସାଜିଛି ଅଙ୍ଗ
ଚାଲି କି ତାର ଗଙ୍ଗା ତରଙ୍ଗ ଯୋଖିବା ମାତ୍ର ଯେ ।
କେଉଁ ଗଜରାଜର ବସନ୍ତ ସଜ ଯେ,
ପରି ଭୂଷଣେ ଅତି ଶୋଭା କା ତେଜ ଯେ ।

ତାହାଙ୍କ ମତ୍ତ ଗଜରୁ କରି ବଗ୍ୱର ହୋଏ ନଷ୍ଟେ ବଇଶ
କୂଳକମଳ ବନକୁ ଦଳି ଦେବେ ଏ ଆଜ ଯେ । ୬ ।
ବରଷାକାଳ ନଦୀ ପରାଇ ବାଟେ ଅବାଟେ ଗଲେ ଯେ ବନ୍ଧୁ
ଦଶ କୋଣରେ ରହିଲା ନାହିଁ ତରୁ ତୃଣ ହିଁ ଯେ ।
ଚଳନ୍ତେ ତାଙ୍କ ଚରଣାଘାତେ ମହୀ ହମାନ ହେଲେ ପର୍ବତେ
ପିଇଯିବାରେ ଶୁଖିଲେ କେତେ ପୋଖରୀ ନଈ ଯେ ।
ପଥର ହିଁ ରହିଲା ନାହିଁ ପଥରେ ଯେ,
କାହା ଧୂଳି ରହିବ ଅବା ଏଥିରେ ଯେ ।
ଧୂମାନ୍ତ କରି ମୂଳକଯାକ ଧନ କାଞ୍ଚନ ଲୁଟି ଅନେକ
ଯାଇଁ ପଡ଼ିଲେ ଷାଠିଏ ବାଟି ବଳ ଭିତରେ ଯେ । ୭ ।

□□□

ଅଭିମନ୍ୟୁ ସାମନ୍ତସିଂହାର

# ଯଶୋଦାଙ୍କ ବାତ୍ସଲ୍ୟ

( ବିଦଗ୍ଧ ଚିନ୍ତାମଣି : ସପ୍ତଷଷ୍ଠିତମ ଛାନ୍ଦ )

( ରାଗ-ଜୟନ୍ତ—କଳାକାଇଞ୍ଚ ବାଣୀ )

ଧୀରେ ଧେନ କାନନରେ କୃଷ୍ଣ ବିଳମ୍ବିତ,
ବାତ୍ସଲ୍ୟ-ମମତା ଧେନ ଖଳୁଛନ୍ତି ମାତ, କଳାମାଣିକ ରେ ।୧।
ନିଧନ ଯଙ୍ଗାଳି ମୋର ଦରିଦ୍ରପସରା,
ଅନ୍ଧ ଲଉଡ଼ି ବାବୁ ରେ ହୃଦରତ୍ନହାର ।୨।
ମୋ ଜୀବଜୀବନ ତୁହି ନୟନପ୍ରତିମା,
ତୋତେ କି ପାସୋରି ହେବ ମୋର ସୁଖସୀମା ।୩।
ଡରୁଥାଉ ଅନ୍ଧାରକୁ ରଖି ଯାଉ ଗୋରୁ,
ଜନକ ଜନନୀ ସୁଖ କାହିଁ ପାଇଁ ସାରୁ ।୪।

ବୃଦ୍ଧକାଳେ ତୁ ମୋହର ଏକଲ୍ଲ ନନ୍ଦନ,
ଦୁଃଖତାପ ବିନାଶନେ ତୁ ହରିଚନ୍ଦନ ।୫।
ଘୋଟିକା, ଅଧାମ, ସର ନ ରୁଚଇ ତୋତେ,
ନାଚ. ଲଞ୍ଚ ମାଗୁଥାଉ ଲବଣୀ କେମନ୍ତେ ।୬।
ତୋଳ ମୁଁ ଧଇଲେ ଗୋଲ ହୋଇଯାଉ ରୁନ୍ଧ,
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହିଁ ।୭।
ଡାକିନୀ ଲେଖନ୍ତି ବୋଲି ଡରୁଥାଉ ମନେ,
ବାରମ୍ବାର ବାରୁଥାଇ ଯିବା ପାଇଁ ବନେ ।୮।
ନିଶାଚର ମାତବାର ଶୁଭୁଛି ଶ୍ରୁତିକ,
ମୁଁ ଡାକୁଣୀ ଛାଡ଼ିଦେଲି ବନକୁ କାହିଁକି ? ।୯।
ଝାଳ ବହୁଥିବ ଅଙ୍ଗୁ ଲାଗି ଝାଞ୍ଜି ଖରା,
ଶ୍ରମ ପାଇ ତରୁତଳେ ବସିଥିବୁ ପରା ।୧୦।
ନେଲୁନାହିଁ କାହିଁପାଇଁ ତୋ କଠାଉ ଛତା,
ବନେ କଣ୍ଟା ଲାଗି ହୋଏ ମୃଦୁପାଦ ଚନ୍ତା ।୧୧।
କାନ ଡେରିଥାଇ ଏକା ତୋ ବେଣୁସ୍ୱନକୁ,
ଆଜ କପଁା ଶୁଭୁନାହିଁ ଘାରୁଛି ମନକୁ ।୧୨।
ତୋ'ଠାରୁ ଅଧିକ ବାଇ ତୋର ବଡ଼ଭାଇ,
ବୋଧ କହିଗଲି ନାହିଁ କାହିଁକି ରଖାଇ ।୧୩।
ତୋ ମାଧୁରୀ ସ୍ୱରୂପ ଦେଖି ସୁଖୀ ଆଖି,
ଅନ୍ଧ କରିଗଲୁ ବଳା ମମତା ନ ରଖି ।୧୪।
ଛୁଇଁକି ଅନାଇ ଛୁଡ଼ ଫୁଲାଇ ତ୍ରିଭଙ୍ଗେ,
ମୁରଲୀ ବଜାଉଥାଉ କି ସ୍ୱରୂପ ରଙ୍ଗେ । ୧୫।
କୋଳି ପାଇଁ ଅଳକର ଗଡ଼ୁ ତୁ ଧୂଳିରେ,
ବେଶ ହେଉଥାଉ ବସି କୁସୁମମାଳରେ ।୧୬।
ନଟବର ପରିପାଟୀ ବେଶ ମନୋହର,
ରଙ୍ଗିମା ଅଧରେ ହାସ କି ଜାତ ସୁନ୍ଦର ।୧୭।
ନୟନ ସୁନ୍ଦର ମାନେ ଭ୍ରୂଲତା ନାଟକୁ,
ଅଳକା ଆବୃତ ଶୋଭା ଲଲାଟପଟକୁ ।୧୮।
ନାକେ କାବ୍ୟତାର ମୋତ ବସଣୀକି ଶୋଭା,
ମୋ ଆଖି ଦେଖିବା ପାଇଁ ନିରବଧି ଲୋଭା ।୧୯।
ମକରକୁଣ୍ଡଳ ଯୁଗ୍ମ ଆନ୍ଦୋଳ ଗଣ୍ଡରେ,
ଦେଖି ଆନନ୍ଦରେ ଭାଷା ନ ଆସେ ତୁଣ୍ଡରେ ।୨୦।

ଗୁଞ୍ଜବେଢ଼ା ବାଙ୍କଚୂଡ଼ା ଖୋସା ଜାମୁଡ଼ାଳ,
କି ସୁନ୍ଦର ଦିଶୁଥାଇ ଆସ୍ୟ ଢଳଢଳ ।୨୧।
କେଡ଼େ ସ୍ୱଚ୍ଛ କେକିପୁଚ୍ଛ ସୁଗୁଞ୍ଜସପାନ୍ତି,
ଆସିବ କାହ୍ନା ପାନ୍ତିକି ତେତେ ପରପାନ୍ଥୀ ।୨୨।
କସ୍ତୁରୀତିଳକ ନାସେ ଭାଲେ ଗୋରଚନା;
ଭାଲରେ ଚନ୍ଦନପାନ୍ତି ମନ ବଶ ସିନା ।୨୩।
ରଙ୍ଗମାଟି କି ରଙ୍ଗରେ ହୃଦରେ ଚର୍ଚ୍ଚିତ,
କଉସ୍ତୁଭ ବନମାଳ ସୁଷମା ବିଚିତ୍ର ।୨୪।
କାଇଁଣ କଙ୍କଣ କରେ କଟିରେ କିଙ୍କିଣୀ,
ନୂପୁର ଶବଦ ମୋର ମନ ନିଏ କିଣି ।୨୫।
ସୁନ୍ଦର ହୁନ୍ଦର ଭଙ୍ଗୀ ନ ଦେଖି ତୋହର,
ବାଇବୁଦ୍ଧି ହୋଇଲଣି ଆସି ତ ମୋହର ।୨୬।
କଣ୍ଟା କରିଥିଲୁ ପରା କାନ୍ଧିକି ନଇଲୁ,
କାହା ସଙ୍ଗତରେ ଅବା ପୁଣି କଳି କଲୁ ।୨୭।
କି ଦୂର ବନକୁ ଗଲୁ ତଥ୍ୟ ନ ଜାଣିଲି,
ମୁଁ ପାପିଷ୍ଠୀ କାହିଁପାଇଁ ତୋ ସଙ୍ଗେ ନ ଗଲି ।୨୮।
ରତ୍ନାକର ଗୃହୁଁ ଅଛୁ କ୍ଷତମୃଗ ପରି,
ଦିନ ସରୁନାହିଁ ଲବ ହେଲି ମୃଗ ସରି ।୨୯।
କେ ଯାଇ କହନ୍ତା ତୋତେ ମୋହର ବେଦନା,
ଅବଶ୍ୟ ହୁଅନ୍ତୁ ତୃଷ୍ଣ ମାତା-ସ୍ନେହ ଘେନା ।୩୦।
ଦଉଡ଼ିଯିବି କି ବନେ ହେଉଛି ଆତୁର,
ପୟୋଧରୁ କ୍ଷୀର ସ୍ରବି ପଡ଼େ ଧାର ଧାର ।୩୧।
ମନ ଛନ୍ନଛନ୍ନ ବନ ନେତ୍ର ନ ରହିଲ,
ତୋ ଅଇଲ ପରା ଗ୍ରୁଇ ମୋତେ ପ୍ରତେ ହେଲ ।୩୨।
ଖଗମାଳେ ମୃଗମାଳେ ରହିଲ ନୟନ,
କୁପୂର୍ବ ଭାଷାରେ ମୋର ବନ୍ଦୀ ହେଲ କାନ ।୩୩।
ଅନେକ ଆପଦୁଁ ତୋତେ ରଖିଲେ ଅମ୍ବିକା,
ନାମ ଦେଇଅଛୁ କାହ୍ନୁ କହ୍ନା କଣାବିକା ।୩୪।
ଅପତ୍ୟାଣି ବୋଲି ମୁଁ ବିନ୍ଧିଲି ନାକ କାନ,
ଖଞ୍ଜିଲି ବସଣୀ ବାଲୀଲୋଦନେ ଶୋଭନ ।୩୫।
ମନ୍ଦଦୃଷ୍ଟି ନ ବାଧିବ ବପୁରେ ମୋହର,
କଳାବିନ୍ଦୁ ଦେଇଥାଇଁ କପାଳେ ତୋହର ।୩୬।

ଗୋରଜ ଲେପଇଁ ଅଙ୍ଗେ ଆପଦ ହରଣେ,
ପଦରଜ ଦେଉଥାନ୍ତି ବୃଦ୍ଧା ଗୋପୀଗଣେ ।୩୭।
ଝୁଙ୍ଗକାଛ ନ ଧଅଇଁ ଡାକନୀଙ୍କ ଡର,
ଭୁଚ୍ଛ ବେଶ କରଥାଇଁ ଲୋଭକୁ ନ ବାର ।୩୮।
କୋଳେ ଶୋଇଥାଉ ନନ୍ଦ ଭାଙ୍ଗିଗଲେ ଭୋର,
ଚମକ ମୋ ଗଲା ଛନ୍ଦ ତାକୁ ମାଡ଼ା ଗିର ।୩୯।
ଏମନ୍ତ ନନ୍ଦନ ପୁଣି ବନବାସୀ ହେବ,
ଜନନୀ ଜୀବନ ଧନ କପର ରହିବ ।୪୦।
କାହାକୁ କ ସୁତ ଦେଇନାହିଁ ରେ ଦଇବ,
ତୋ ପର ଅବୁଝା ପୁଣି କେ କାହିଁକ ହେବ ।୪୧।
ବହ୍ମଭ୍ରମରେ ସନ୍ଧି କଷ୍ଟ ଦୂର ନ ଜାଣିଲେ,
ଆସ ବାପ ଭାଇ ଧନ ଦ୍ରୁଇକ ବୋଇଲେ ।୪୨।
ଅଯତନେ ନୟନ ଦେଲେ ଦାଉଡ଼ି ଦାଣ୍ଡକୁ,
ହୃଦେ କର ମାର ଯତ୍ନ ନ କଲେ ପିଣ୍ଡକୁ ।୪୩।
ରୋହିଣୀ ବାରଲେ ଆସି କନ୍ଧ ବୋଧକର,
ଧୀରେ ସେନ ଏ ବାତ୍ସଲ୍ୟ ବଚନ ମାଧୁରୀ, କଳାମାଣିକ ରେ ।୪୪।
ସାମନ୍ତସିଂହାର ଧନ କରୁଛୁ କାମନା,
କୃଷ୍ଣପ୍ରେମରସ ବିନା ହୋଇବ ଭାବନା, କଳାମାଣିକ ରେ ।୪୫।

□□□

ସାଲବେଗ

# ଆହେ ନୀଳଗିରି

ଆହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ କି ଦକ୍ଷିଣା କେଶ କେର ।।
ତୁଳସୀ ଚନ୍ଦନ ପାଶେ ଜଗି
ବସି ଧାଉଁଛନ୍ତି କେତେ ଯୋଗୀ,
ବ୍ୟାଘ୍ରଚର୍ମ ପାରି ସ୍ତୁତି କରୁଛନ୍ତି ଜପୁଛନ୍ତି ନାମ ସଂଖ୍ୟା କରି । ୧ ।
ବଡ଼ଦାଣ୍ଡ ଦେଖି ହେଲି ତୋଷ,
ରେଣୁମାତ୍ର ତେଣୁ କଲି ଗ୍ରାସ;
ଖିରି ଖେଚଡ଼ିରେ ମନ ନ ବୋଧଇ ଟଙ୍କ ତୋରାଣିରେ ମନ ତୋଷ ।୨।
ସିଂହଦ୍ୱାରେ ପଡ଼େ ବେତବାଡ଼ି,
ବାଜନ୍ତେ ପାଇକ ଯାଏ ଛାଡ଼ି,
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତେ ଏକାକୁ ଆରେକ ହୁଡ଼ାହୁଡ଼ି । ୩ ।
ବାଇଶି ପାବଚ୍ଛ ଗଲି ସୁଖେ,
କୈବଲ୍ୟ ପସରା ବେନ ପାଖେ,
ଗୃଣ୍ଡାକୁ ବ୍ରାହ୍ମଣ ଶୂଦ୍ର ପରଶନ୍ତେ କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।୪।
ରୋହିଣୀ ପାଦୁକା କୁଣ୍ଡରଜ
ସିଂହ ମାଡ଼ି ବସିଅଛି ଗଜ,
ସତେ କି ଏ ଜନ୍ମ ସୁଫଳ ଲଭିବ କାକ ପଡ଼ି ହେଲା ଚତୁର୍ଭୁଜ ।୫।
ଗରୁଡ଼ ପଛରେ ରହି ଦେଖ,
କି ଶୋଭା ପାଉଛି ପଦ୍ମମୁଖ,
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି ହୃଦେ ଲମ୍ବି ଅଛି ହାରନେକ । ୬ ।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣି,
କଳପବଟକୁ ପ୍ରଦକ୍ଷିଣ କଲେ ସାଧୁସନ୍ଥେ ଦେଲେ ହରିଧ୍ୱନି । ୭ ।
କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗାଚରଣେ ରହୁ ମତି,
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ବାରେ ଦୟାକର ଲକ୍ଷ୍ମୀପତି । ୮ ।

□□□

## ଆହେ ନୀଳଶଇଳ ପ୍ରବଳମତ୍ତବାରଣ

ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ,
ମୋ ଆରତ-ନଳିନୀ-ବନକୁ କର ଦହନ ! ୧ ।

ଗଜରାଜ ଡାକ ଦେଲା ଗ୍ରାହ ମୁଖ ବେଳେଣ,
ଚକ୍ର ପେଷି ନକ୍ର ନାଶି କୃପାକଲ ଆପଣ । ୨ ।

ଦ୍ରୌପଦୀ ଯେ ଚିନ୍ତାକଲା କୁରୁସଭା ତଳେଣ,
କୋଟି ବସ୍ତ୍ର ଦେଇ ତାଙ୍କ ଲଜ୍ଜା କଲ ବାରଣ । ୩ ।

ହରିଣୀକି ଘୋରବନେ ପଡ଼ିଥିଲା କଷଣ,
ଡାକିଲା ମାତ୍ରକେ ହରି ରକ୍ଷାକଲ ଆପଣ । ୪ ।

ରାବଣର ଭାଇ ବିଭୀଷଣ ଗଲା ଶରଣ,
କେତେ କେତେ ବିପତ୍ତିରୁ ରଖିଅଛ ଆପଣ । ୫ ।

ଅଜାମିଳ ଡାକ ଦେଲା ଜୀବ ଯିବା ବେଳେଣ,
ତେଡ଼େ ବଡ଼ ପାପୀ ଗଲା ବଇକୁଣ୍ଠ ଭୁବନ । ୬ ।

ପ୍ରହଲ୍ଲଦ ପିତା ଯେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ । ୭ ।

ନୀଳାଚଳେ ବିଜେକରି ବୌଦ୍ଧ ଅବତାରେଣ,
ବେନି ଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ । ୮ ।

□□□

ବନମାଳୀ ଦାସ

## ବେଶ-ପ୍ରଶଂସା

( ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା )

ଶ୍ୟାମ ନାଗର ହେ ! ଏ ବେଶ ହୋଇବ ନାହିଁ ।
ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କାହିଁ ? (ଘୋଷା)
ଉଭା ହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ ।
ଘେନିଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ । ୧ ।
ପିନ୍ଧିଥିବ ଯେବେ ପୀତାମ୍ବର ତୁମ୍ଭେ ଭୂମିରେ ଲୋଟିବ ନାହିଁ ।
ହସୁଥିବ ଯେବେ ମୃଦୁ ମୃଦୁ ହୋଇ ଛେରଛେ ଗୃହିବ ନାହିଁ । ୨ ।
ଘେନିଥିବ ଯେବେ ଚନ୍ଦନର ବିନ୍ଦୁ ଗୋରଚନା ଥିବ ନାହିଁ ।
ବାନ୍ଧିଥିବ ଯେବେ ତ୍ରିଭଙ୍ଗିମା ଚୂଳି ଚନ୍ଦ୍ରିକା ଖୋସିବ ନାହିଁ । ୩ ।
ଯେତେ ବେଶ ତୋତେ ମନାକଲି ଶ୍ୟାମ ତେତେ ବେଶ ହେଲୁ ତୁହି ।
ବୋଲେ ବନମାଳୀ ଶୁଣ ଗୋ ରାଧିକେ ! ଏ ବେଶ ତୁମ୍ଭର ପାଇଁ । ୪ ।

□□□

## ଜଗନ୍ନାଥ ଜଣାଣ

ଜଗନ୍ନାଥ ହେ, କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ                    ଜନ ମାଗୁନାହିଁ
ମାଗୁଛି ଶରଧା ବାଲିକୁ ହାତେ ।।
ଆନ ଦରଶନ ନ ଲୋଡ଼େ ନୟନ ଏକା ତୁମ୍ଭ ଦେଖା ବିନା
ଶୁଣିବାକୁ କାନ ନ ଇଚ୍ଛଇ ଆନ ତୁମ୍ଭ ଚରିତେ କାମନା । ୧ ।
ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟ ଗୀତ ଗାଇବାକୁ ରଜନୀ ଦିବସ
ତୁମ୍ଭ ନାମାବଳୀ କେବଳ ସଙ୍ଖାଳି ହୋଇଥାଉ ପୀତବାସ । ୨ ।

ନାସା ମୋର ତୃପ୍ତି ନ ଲଭଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ
ତୃମ୍ଭ ଛଡ଼ାମାଳ ତୁଳସୀ କୁସୁମ ଚନ୍ଦନ କର୍ପୂର ଘାନେ । ୩ ।
ମୋ ହସ୍ତ ଅଞ୍ଚଳ ରାମ ବନମାଳୀ, ହରେକୃଷ୍ଣ ଜପୁଥାଉ
ବୋଲେ ବନମାଳୀ ମୋ ବେନିଚରଣ ତୋ ତୀର୍ଥ ଭ୍ରମଣେ ଧାଉ । ୪ ।

□□□

କଣ୍ଠଧ୍ୱନି ବଳଦେବ ରଥ

## ଜଗତେ କେବଳ ଜନେ ହସିବେ

( ରାଗ—ଆଷାଢ଼ଶୁକ୍ଳ )

ଜଗତେ କେବଳ, ଜନେ ହସିବେ ଏହୁ ତହୁଁ ଫଳ ॥
ଜଟିଳ କରି ସ୍କନ୍ଧ ଲୋମରାଜି
ଶିଂଶପା ଦଣ୍ଡରେ ମଚୁ ଗରଜି
କୁଟିଳ କରି ଭ୍ରୁକୁଟିକି ତହୁଁ ପରମା କଣ୍ଠୀରବ ହେବ କାହୁଁ ? ୧ ।
ଅଳକତ ଦ୍ରବ ନୟନେ ବୋଳି
ରସାଳ ପଲ୍ଲବ ଶାଖାରେ ଖେଳି
କବଳ କରୁ ତା କଳି କଳାପ କାକ କି କରିବ ପଞ୍ଚମାଳାପ ? ୨ ।
ବରଣାବରସେ ଦେଇ ମାନସ
ବରଜି ବରପେ ଅମେଧ ଗ୍ରାସ
ଦେହେ ମନ୍ଦାକିନୀ ରଜ ଲଗାଇ ଗ୍ରାମ ଶୂକରି କି ହୋଇବ ଗାଈ ? ୩ ।
ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ
ନିଜ ତୁଣ୍ଡେ ମଣ୍ଡି ଖଣ୍ଡେ ମୃଣାଳ
ତୂଳ ପୂର୍ବ ଅଙ୍ଗ ବୁଲଇ ବକୀ ତେବେ ସେ ମରାଳୀ ହୋଇବ କି ? ୪ ।

× × × ×

ଯାହାକୁ ଯାହା କରିଛି ଦଇବ
ତହୁଁ କି କେ ଯେ ଅନ୍ୟଥା ହୋଇବ !
ଯେବେ ଲେ ହେଲେ ଯତ୍ନେ କୋଟି ପୁଟ ପିତଳୁଁ କି କେହୁ ହେବ ସୁରଟ ? ୫ ।

ଦେବ ଉପବନେ ହୋଇ ଜନତା
ସୁବାସ ମନ୍ଦରୁ କଳ୍ପଲତା ।
ତୁଳସୀ ତୃଣେ ହେଲେ ମିଶାମିଶି    ତାହାକୁ ଯେବେ ବୋଲିବା ତୁଳସୀ ? ।୬।
ଦମକଇ ନାହିଁ ସ୍ୱଜାତି ଭଷା
କାହିଲେ ଯେ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜାଣି ସ୍ୱବେଦ    ଷଡ଼ଦର୍ଶୀ ତୁଲେ କଲେ ବିବାଦ ।୭।
ଦେହରେ ବାଜିଲେ ପର ନିଃଶ୍ୱାସ
ଧିମ୍ପାଲିବାକୁ ନ ଥାଇ ବିଶ୍ୱାସ ।
ନିର୍ଲଜ୍ଜ ଅଭିମାନେ ତେଜି ତୃଣ    ହାତୀ ଲଡ଼େଇକି ବାନ୍ଧିଲେ କାଠ ।୮।
ବୋଲି ହୋଇ ଭୂତ ଧରି ପରଶୁ
ବଳିବର୍ଦ୍ଦ ବର ଚରମେ ବନ୍ଧୁ ।
ଗର୍ଭସ୍ଥ-ପ୍ରାଣନାଥ ଅନୁଭବ    ଠଉରି ପାରିବ ନାହିଁ ତା ଲବ ।୯।
ଗଙ୍ଗାର ପ୍ରବାହେ ଅଳପେ ବୁଡ଼ି
ଅଙ୍ଗାର ନିଜ ନିଜ ବର୍ଣ୍ଣ ଛାଡ଼ି ।
ବଳାହତ ରଂହୁ ପର ଦଶିବ    ବାଳା ପୟୋଧର ହାରେ ମିଶିବ ? ୧୦ ।

(କବିତା କଲ୍ଲୋଳିନୀ)

□□□

ଗୋପାଳକୃଷ୍ଣ ପଟ୍ଟନାୟକ

## ଅଶରଣ ଜନ-ବନ୍ଧୁପଣ

( ରାଗ—ଆନନ୍ଦଭୈରବୀ, ତାଳ—ଏକତାଳୀ )

ଅନୁସରିତ, ପ୍ରଭୋ ! କାଳଡାକ ଗଲା ସରି ତ ।
କଣ ଅତରଣ କଲେ କେତେ ଉଣା ହୁଅନ୍ତା କରୁଣା-ଧରିତ ? । ପଦ ।
ଅଶରଣଜନ ବନ୍ଧୁପଣ ଧରି ସଂସାରେ ହୋଇଛୁ ଉଦିତ ।
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ ଦେଲ ତାରି ତ । ୧ ।
ପାଞ୍ଚାଳୀଙ୍କ ଦୁଃଶାସନ ଘଞ୍ଚାଳିଲା ବଞ୍ଚାଇଲ ବାସ ଦେଇ ତ ।
ଶୁଣିଆଇଲ ନାହିଁ ମୋ ଦୁଃଖର କନ୍ଦନ ପୋଛୁଇଲ ନେତ୍ରୁ ବାରି ତ । ୨ ।

କାହିଁ ଥିଲ ଚକ୍ଷ, କାହିଁ ଥିଲ ନକ୍ଷ, ପଲକ ପତନ ନୋହୁ ତ ।
ଛାଡ଼ିଗଲ ମଥା ରହିଗଲ କଥା ଡାକିଲ ମାତ୍ରକେ କଷ୍ଟ ତ । ୩ ।
କାଳ-କିଙ୍କର ଭୟରେ ଅଜାମିଲ ପୁତ୍ରୋପଚ୍ଛରରେ ଡାକ ତ ।
ପରମ-ପଦ ପାଇଲ ଆପଣଙ୍କ ନାମ-ମହିମା ଏପର ତ । ୪ ।
ନିରୁପାଧି କୃପାକର ବୋଲି ବିଧି ଭବାବ୍ଧିରେ ଥାଉ କଥିତ ।
ମୁଁ କଲ ଦୋଷ କି ? ଜାଣିଛୁ ତ ବଳ୍ମା ବିଷ ପିଆଇ ତା ଦୁରିତ । ୫ ।
ଗୋପାଳକୃଷ୍ଣ କହେ ଜଗନ୍ନିଗଲ ଯାହା କରିବ ତୁମ୍ଭ ଚିତ୍ତ ।
ଆପଣ ଦୟାଳୁପଣକୁ ବଳି ମୋ ଦୁଷ୍କୃତ ନୁହଇ ଭାର ତ ? ୬ ।

୦୦୦

## ଭାବପ୍ରେମ ଅମୂଲ୍ୟ

( ରାଗ—ମଙ୍ଗଳଗୁର୍ଜ୍ଜରୀ, ତାଳ—ଏକତାଳୀ )

ଉତ୍ତମାଭକ୍ତିକ ମନ, କର ରେ ଆଶ୍ରୟ ।
ପରିହରି ଜ୍ଞାନ କର୍ମ ଲଜ୍ଜା ଘୃଣା ଭୟ । ପଦ ।
ଯାବତ ବାସନା ତୋର ସମୂଳେ ବରଜ ।
ଅନୁକୂଳ ଭାବେ ସଦା ରାଧେକୃଷ୍ଣ ଭଜ । ୧ ।
ସର୍ବୋପାଧି ଶୂନ୍ୟ ହୋଇ ରହ ରେ ତତ୍ପର ।
ହୃଷୀକେ ହୃଷୀକେଶଙ୍କ ସେବାକୁ ଆଦର । ୨ ।
ସାଲୋକ୍ୟାଦି ପଞ୍ଚବିଧ ମୁକ୍ତିକି ନ ବାଞ୍ଛି ।
ଚତୁର ପୁରୁଷାର୍ଥ ମଣ ତୃଣ ପରି ତୁଚ୍ଛ । ୩ ।
ତ୍ରିବିଧ ସୁଖରେ ତୋର ଦିଅ ଜଳାଞ୍ଜଳି ।
ଅନୁରାଗେ ଯେନ କୃଷ୍ଣ ସଦ୍‌ଗୁଣ ଆବଳୀ । ୪ ।
ନିଷ୍କାମେ ସାଧନ ଭାବପ୍ରେମ ଯେ ଅମୂଲ୍ୟ ।
କୋଟି କୋଟି ବ୍ରହ୍ମାନନ୍ଦ ନୁହେଁ ଯାର ତୁଲ୍ୟ । ୫ ।
ଗୋପୀ ଅନୁଗତେ ରାଗ-ମାର୍ଗ ଅନୁସର ।
ଲୁବ୍‌ଧ ହୋ, ଗୋପାଳକୃଷ୍ଣ କହଇ ବିଚାର । ୬ ।

୦୦୮

ଭକ୍ତଚରଣ ଦାସ

## କଂସର ଚଣ୍ଡାଉ

### ( ମଥୁରାମଙ୍ଗଳ : ତୃତୀୟ ଛାନ୍ଦ )

( ରାଗ—ବଙ୍ଗଳାଶ୍ରୀ )

ଲେଖିଅଛୁ କଂସ ହୋଇ ମହାରୋଷ, ଆରେ ଗୋପପତି ନନ୍ଦ ।
ଆଜ୍ଞା ପ୍ରମାଣେ ତତକାଳେ ଆସିବୁ ନୋହିଲେ ଛେଦିବି କନ୍ଧ ॥
ଜାଣୁ ତ ମୋହର ବଳବୀର୍ଯ୍ୟ ଯେତେ, ଅରିକୁଳକୁ କେତୁ ।
ପ୍ରତିଜ୍ଞାରେ ରଣ ତେଜି ରଣରାଜ ପୁତ୍ରେହେଁ ଲଭନ୍ତି ମୃତ୍ୟୁ ॥
କୋପ କଲେ ମହୀ ଦୋହଲି ଉଠଇ, ମେରୁ ହୁଏ ଥରହର ।
ରାଣ ଦେଲେ ଜନ୍ତୁପତି ଭସ୍ମ କରେ, ଆହ୍ମମାନେ କେତେ ଛାର ॥
ବାଧାଘାତେ ଚନ୍ଦ୍ରକୂଟ କୁଧରକୁ କରିପାରଇ ମୁଁ ଚୂନା ।
ଅରିଶ ଉରସଲ ବାନା ବହଇ, ଶରଣକୁ ବଜ୍ରସେହ୍ନା ॥
ଦାନପଣକୁ ସୁନାସୀର ପରାସ୍ତେ, ଗମ୍ଭୀରପଣେ ଜଳଧି ।
ପଣ୍ଡିତପଣେ ଦେବଗୁରୁ ହାରଇ ବେଦ ବେଦାନ୍ତର ବିଧି ॥
ଧାର୍ମିକପଣେ କେହି ସମ ନୁହନ୍ତି, ପରଜାପାଳନେ ତାତ ।
ମୋର ଦେଶରେ ଭସ୍ମ କରି ପ୍ରଚଣ୍ଡ ହୋଇ ନ ବହଇ ବାତ ॥
ଅଗ୍ନି ଦେବତା ଶିଖାମାନ ନଉନ ଦେଖି ମୋର ତେଜ ବଳ ।
ସୁଜନ ରଖି ଦୁର୍ଜନକୁ ମାରଇ, ଏ କଥା ମୋହର ମୂଳ ॥
ଗଡ଼ ଦେଖି ବଡ଼ କ୍ଷତ୍ରୀମାନେ ଆଡ଼ ହୁଅନ୍ତି ବହୁତ ଦୂରୁ ।
କଣ୍ଟକାଇ କଲେ ଅମରେ ପଳାଇ ଯାଆନ୍ତି ଅମରପୁରୁ ॥
ଯାଦବକୁଳ କୁମୁଦ-ବନ ପ୍ରାୟେ, ମୁଁ ତହିଁକ ନିଶାମଣି ।
ସୁନ୍ଦରପଣେ କାମ ସରି ନୁହଇ, ସହିବାପଣେ ଧରଣୀ ॥
ଯୁଦ୍ଧ ନ କରି ଯୋଦ୍ଧାମାନ ଜିଣିଲି ବ୍ରହ୍ମାଣ୍ଡ ହୋଇଲା ମୋର ।
ଏହିଠାରେ ଥାଇ ଦର୍ଶନେ ନ ଆସୁ ଏଡ଼େ ଗାରିମା ତୋହର ॥
ରଢ଼ି ଗୋଷ୍ଠାକେ ସବଜନ୍ତୁ ମରିବେ ଉନପୁରେ ଥିବେ ଯେତେ ।
ଦୟାକରି ତାଙ୍କୁ ଶରଣ ରଖିଲି ଯେଣୁ ଆଶ୍ରେ କଲେ ମୋତେ ॥

ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ସଙ୍ଗେ ଅଷ୍ଟଭୁଜ ସମସ୍ତେ ମୋହର ବଶ ।
ମହାବୃକ୍ଷମାନେ ଛାଡ଼ି ପଳାଇଲେ ଶୁଣି ମୋର ବୀରଘୋଷ ॥
ଛାର ଗଉଡ଼ ଅକ୍ରୂର ଏଡ଼େ ମୂଢ଼, ନ ଦେଉ ମୋହର କର ।
ଦେବ ଯେବେ ଧୈର୍ଯ୍ୟ ରଖିବ କେ ବାପ ? ଅନଳେ ଦହିବ ପୁର ॥
ଶ୍ୱଶୁର ଯାର ଜରାସନ୍ଧ ଦଇତ, ସଖା ଯାର ବୀର କେଶୀ ।
ଏକା ନିମିଷକେ ଚରାଚର ମଣ୍ଡି ପକାଇ ପାରଇ ଧ୍ୱଂସି ॥
ଶୂର ନାରକା ବ୍ୟୋମା, ଅଘା, ପ୍ରଳମ୍ବା, ତୃଣାବ ଦୁର୍ବନ୍ଧ ବୀର ।
ଚାଣୂର, ମୁଷ୍ଟିକ, ଶଲ୍ୟ ଆଦିମାନେ ଅଛନ୍ତି ମୋ ହନୁକାର ॥
କେବଳ ଶିଶୁପ-କୁସୁମକୁ ମହାପ୍ରଳୟ ବରଷା ଲୋଡ଼ି ।
ସେହି ପ୍ରାସ୍ତେ ମୁହିଁ, ସେହି ପ୍ରାସ୍ତେ ତୁହି, ଶିଶିରେ ଯେ ଯିବୁ ଝଡ଼ି ॥
ଏବେ ମୋର ଧନୁ ଉତ୍ସବ ହୋଇଛି, ସମ୍ଭାର ଘେନାଇ ଆସ ।
ସମସ୍ତ ଦୋଷ ତୋର କ୍ଷମା ହୋଇଲା ମନେ ନ କରିବୁ ତ୍ରାସ ॥
ଘିଆର ଦହି ଶତେ ଭାର ଘେନାଇ ଗୋଟିକା ଅଧମ ଅନ୍ଧ ।
ସଙ୍ଗେ ଗୋପ ଦଶପଞ୍ଚାଶ ଆଣିବୁ କରିବେ ସେ ଯାତ୍ରାବଧି ॥
ରାମକୃଷ୍ଣ ବେନି ଭାଇଙ୍କୁ ଅକ୍ରୂର ସଙ୍ଗେ ସଙ୍ଗ କରିଦେବୁ ।
କେଡ଼େ ହେଲେଣି ତୋର ବେନି ନନ୍ଦନ ତାହାଙ୍କୁ ଆମ୍ଭେ ଦେଖିବୁ ॥
ସେହି ଦେଖିବେ ମୋର ଧନୁ ଉତ୍ସବ, ଶୁଭ କଥା ସିନା ତୋତେ ।
ବଡ଼ଲୋକ ସଙ୍ଗେ ସଙ୍ଗ ହୋଇଯିବେ ଭୟ ନ ରହିବ ଚିତ୍ତେ ॥
ବୃଦ୍ଧ ଶରୀର, କେତେ ଦିନ ବଞ୍ଚିବୁ, ମିଥ୍ୟା ମାଟି କଳେବର ।
ତୋହ ଥାଉଁ ଥାଉଁ କୁମର ବେନିଙ୍କି ଆମ୍ଭରେ ପରଚେ କର ॥
ଶାଢ଼ୀ ବନ୍ଧାଇ ରାଜନପଣ ଦୋଇ ସୁଖେ ନୃହେ ବସିଥାଅ ।
ଆମ୍ଭର ଯେତେ ହାନି ଲାଭ ହୋଇବ କରିବେ ତୋହର ପୁଅ ॥
କାଶି ପାହିଲେ ଧନୁପୂଜା ହୋଇବ, ଅଳସ ନ କର ଆସ ।
ଏମନ୍ତ ବୋଲି ଚଟାଉ ଲେଖିଅଛି ପଢ଼ି ନନ୍ଦ ହେଲେ ତୋଷ ॥
ବସୁଦେବଉରେ ଦୁନ୍ଦୁଭି ଭିତରେ କଲା ମହାଘୋର ଶବ୍ଦ ।
ଯହୁଁ ଶୁଣିଲ ମଥୁରା ଯିବେ ଦୂତ ସଙ୍ଗେ ରାମ ଶିଶୁପଦ ॥
ପରିଜନ ଗାଇ ବୋଲେ ଗୋପସାଇଁ ଗୋପରେ ଘୋଷଣା ଦିଅ ।
କାଶି ପାହିଲେ ମଥୁରାପୁର ଯିବେ ସମ୍ଭାର ସଜାଡ଼ି ଥାଅ ॥
ଏତେକ ଭାଷି ଅକ୍ରୂରଙ୍କୁ ଚରଣେ କରଇ ବରଜରାଜା ।
ବୋଲେ ବନଚାରୀ ଭକତଚରଣ ଗୋପରେ ବାଜଇ ବାଜା ॥

□□□

# ମୋ ଜୀବନ ପଛେ ନର୍କେ ପଡ଼ିଥାଉ

## ( ସ୍ତୁତିଚିନ୍ତାମଣି—ସପ୍ତବିଂଶ ବୋଲି )

ବଖାଣି ମହିମା ଧର୍ମକୁ ସ୍ଥାପିବା ଶ୍ରୀମୁଖରେ ଆଜ୍ଞା ଦେଲେ
ଦାସପଣେ କରି ଅଧବାଟେ ଆଣି କର୍ମା ଏତେ ସର କଲେ । ୧ ।
ନାହିଁ ମୋ ଭରସା ଉଡ଼ୁଛି ସାହସା କି ବୁଦ୍ଧି କରିବି କହ,
ଜଗତ ସମ୍ଭାଳି ଜଗତକୁ ପାଳି ତୁମ୍ଭ ଭାର ତୁମ୍ଭେ ବହ । ୨ ।
ଭଗତଙ୍କ ଦୁଃଖ ନିରନ୍ତର ଦେଖି ଲାଗିଲାଣି ପାଦାରବିନ୍ଦେ,
ବାଢିଥା ଯୋଗାଣ ଆଗପଛ କରି ବହିଥାଅ ନିଜ କାନ୍ଧେ । ୩ ।
ସମ୍ପତ୍ତି, ବିପତ୍ତି, ମୁକତି, ଦୁର୍ଗତି, ଭିଆଣ କରିଛ ଯୋଡ଼ି,
ପାପ-ଦୁଃଖଭାର କେ ତୁମ୍ଭ ବୋହିବ ପାଦତଳେ ଥାଉ ପଡ଼ି । ୪ ।
ବିଜେ କରିଅଛ କର୍ମା ନିବୃତ୍ତୁଛି ଚଳାଇ ପାରିବ କାହିଁ,
ଅର୍ଜି ପାପଭାର କରିବ ପସରା ପାଦ ତଳେ ଦେବି ଥୋଇ । ୫ ।
ଶରଣ ବାଞ୍ଛିତ କାନ୍ଦିକାନ୍ଦି ଭକ୍ତ ଗଡ଼ିଗଲେଣି ସକଳ,
ଦୋଷ ଅପରାଧ କ୍ଷମାକରି ଗୁରୁ ଜାଗ୍ରତରେ ପ୍ରତିପାଳ । ୬ ।
ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ । ୭ ।
ଜଣାଉଛି ମୁଁ ଯେ ଭକ୍ତଭାବ ରଙ୍ଗେ ଆହେ ଅଣିମା ଅନନ୍ତ,
ତିନି ବ୍ରହ୍ମାଣ୍ଡରେ ଯେତେ ଜୀବ ଜନ୍ତୁ ସମସ୍ତେ ତୁମ୍ଭ ଭଗତ । ୮ ।

× × ×

ଏକ ଖଣ୍ଡେ ହାଡ଼ ବୃନ୍ଦାଏ ରୁଧିର ଫୁଟେ ମାଉଁସ ଜାଣଇ,
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରିବି ମୁହିଁ । ୯ ।
ଏକା ଖଡ଼ଗରେ ଦଶ ପାଞ୍ଚ ମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ,
ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ । ୧୦ ।
ଆତ୍ମା ଭଗତରେ ଦୋଷାଦୋଷ ହେଲେ ବଜ୍ର ପଡ଼ୁ ମୋ ମୁଣ୍ଡକୁ
କହେ ଭୀମ ଭୋଇ ବ୍ରହ୍ମଶାପ ଦେଇ ଜାଳିଦିଅ ମୋ ପିଣ୍ଡକୁ । ୧୧ ।

□□□

କବିବର ରାଧାନାଥ ରାୟ

## ଶ୍ମଶାନ ଦୃଶ୍ୟ

କି ଘୋର ବୀଭତ୍ସ ଆହା ଏ ମଶାଣ-ଭୂମି !
ପରିକୀର୍ଣ୍ଣ କେଶଜାଲ ଅଙ୍ଗାରେ ଖର୍ପରେ ।
ନୀରବେ ଆସୀନ ହୋଇ ଯହିଁ ଭସ୍ମାସନେ
ଭବର ଭଙ୍ଗୁର ଲୀଳା ଦେଖଇ କୌତୁକେ
ନିଠୁର ବିକଟାଳ କାଳ ଅସ୍ଥି-ମାଳାଧାରୀ;
ସାମ୍ୟ ଦୀକ୍ଷା ପ୍ରଚାରଇ ଏହି ପୀଠସ୍ଥଳୀ,
ସମାନ ସରବେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ,
କି ରତ୍ନପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଷେୟ ବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ
ସମଦଶା ସଭିଙ୍କର, ସମ ପରିଣତି;
ଜୀବନର ସ୍ରୋତ ବହେ ସଦା ଏ ସାଗରେ,
ତରୁକୁଞ୍ଜୁ ପର୍ଣ୍ଣପୁଞ୍ଜ ଉଡ଼ାଇ ଯେସନେ
ଆଣେ ବାତ୍ୟା, ହେମନ୍ତ ନିର୍ମମ ନିୟତି
ଘଉଡ଼ାଇ ଆଣେ ଜୀବେ ଏ ମଶାଣଭୂମେ,
କାଳର ଲଗିଛି ନାଟ ଏଥି ସର୍ବକାଳେ,
ମୂରତି ଏହାର କିବା ବିଭୀଷିକାମୟୀ !
ଆକାଶେ ମଣ୍ଡଳାକାରେ ମୁହୁର୍ମୁହୁଃ ଘୂରି
ପଡ଼ନ୍ତି ଗୃଧ୍ରେ ଆସି କଳକଳା ରବେ
ରକ୍ତ, ଲାଳ, କ୍ଳେଦ ତାଙ୍କ ଚଞ୍ଚୁପୁଟୁ କ୍ଷରି
ଝରଇ ଆକାଶ ଯୋଡ଼ି ବୃଷ୍ଟିଧାରା ପ୍ରାୟେ,
ଅଶିବ ପଟହ ପ୍ରାୟେ କର୍ଣ୍ଣକଟୁ ରବେ
ଉସୁକାଇ ପ୍ରେତରାବ ଭୈରବେ ସଘନେ
ରାବନ୍ତି ଶୃଗାଳକୁଳ ଭ୍ରମି ଚଉଦିଗେ,

ଜଟିଳାଗ୍ର ଚିତାବହ୍ନି ଜଳେ ଠାବେ ଠାବେ
ପ୍ରଦୀପ୍ତ ମସ୍ତିଷ୍କ ମେଦେ, ଫୁଟାଇ ବିକଟେ
ନୃକରୋଟି, ତୀବ୍ର ଗନ୍ଧ ପ୍ରସାରି ପବନେ;
ରୁଣ୍ଡ ହୋଇ କାହିଁ ଅବା କାନ୍ଦନ୍ତି ବିକଳେ
ପରେତର ପରିଜନେ, ଭାଲେ କର ମାରି,
ତିନ୍ତାଇ ଲୋତକଧାରେ ଶ୍ମଶାନ-ଅବନୀ,
ପଡ଼ିଛନ୍ତି ଠାବେ ଠାବେ ଶବ ରାଶି ରାଶି,
ବେଷ୍ଟିତ ଶ୍ୱାପଦକୁଳେ, ସଦ୍ୟାମୃତ କେହୁ,
ଢୋଲ ହୋଇ ଫୁଲି କେହୁ ସଢ଼ଇ ମାଟିରେ,
ପ୍ରକଟାଇ ପୂତି-ଗନ୍ଧ ନାସାରନ୍ଧ୍ର ରୋଧୀ;

× × ×

ଆହା ଏହି ପରିଣାମ ଏ ପିଣ୍ଡର ସିନା !
ଏହି ସେହି ସୁଷ୍ଠୁକଣ୍ଠୀ, ଏହି ସେହି ଉରଃ
ତୋର ସୁବିଶାଳ ସ୍ୱର୍ଣ୍ଣ କପାଟ ପରାୟେ,
ଏହି ସେ ସୁନ୍ଦର ମୁଖ, ଚନ୍ଦ୍ରେ ଶତଦଳେ
ଘଟୁଥିଲା ପଟାନ୍ତର ଯା'ର ସ୍ୱରୂପଣେ,
ଏହି ସେ ଅଧର, ଯା'ର ରମ୍ୟ ଅରୁଣିମା
ଗଞ୍ଜିଥାଇ ପକ୍ୱବିମ୍ବେ, ଫୁଲ ବନ୍ଧୁଜୀବେ,
ଲୀଳାବିଳାସର ଥିଲେ ଉପାଦାନ ଯେତେ
ଏହିମାନେ ଭଜିଛନ୍ତି ଆହା କି ବିକୃତି !
ରକ୍ତ ମେଦ ମାଂସ ଅସ୍ଥି ଲୀଳାକାରେ ଏବେ
ଉପୁଜାନ୍ତି ଏ ସରବେ ତ୍ରାସ ଭୀରୁ ଜନେ,
ବୈରାଗ୍ୟ କରନ୍ତି ଦୃଢ଼ ଜ୍ଞାନୀଙ୍କର ମନଃ,
ଆହା, ଏହା ଦେଖି ଲୋକେ ହୁଅନ୍ତି କେସନେ
ମତ୍ତ ବିଷୟର ମଦେ ଏହି ଦେହ ବହି
ଏ ବୀଭତ୍ସ, ଏ ଭଙ୍ଗୁର ଦେହ ବହି ପ୍ରାଣୀ
ହୁଅନ୍ତି କେସନେ ମତ୍ତ ଆତ୍ମବଡ଼ିମାରେ ?
ଅବସାନ ହୋଇ ଏବେ ଆସିଲଣି ଦିବା,
ଦିଗଦିଗନ୍ତରୁ ଉଡ଼ିଆସି ବିହଙ୍ଗମେ
ମୁଖର କଲେଣି ରାବେ ନୀଡ଼ ଦ୍ରୁମାବଳୀ,
ଦିନ ଯାଇ ଆସେ ରାତି ନିସ୍ତବ୍ଧ-ଶାସନେ,

ନକ୍ଷତ୍ର-ଶାସନେ ସିନା ପ୍ରଭାସିତ ହୋଇ
ଗଗନ ପ୍ରାଙ୍ଗଣ ଦୀପ, ଅବିଶ୍ରମଗାମି-
କାଳ-ଭୁଜଙ୍ଗର ଶିଖାମଣି ଦିନମଣି
ଦୂରାନ୍ତ ସାଗରଜଳେ ଲୋହିତ ବରନେ,
କାହିଁ ସେ ପ୍ରତାପ, କାହିଁ ସେହି ଚଣ୍ଡ ଦ୍ୟୁତି ?
ଅସ୍ତମିତ ଏବେ ସବୁ ନକ୍ଷତ୍ର-ଶାସନେ
ନକ୍ଷତ୍ରର ରଙ୍ଗଭୂମି ଏ ମଶାଣ-ସ୍ଥଳୀ;
ଖାଲି ଏ ମଶାଣ କାହିଁ ? ସେହି ସେ ନକ୍ଷତ୍ର
କାପାଳିକ ରୂପେ ଖେଳେ ଅଖିଳ ଜଗତେ
ବିଶ୍ୱଯାକ ତାର ନୀଳା ମଶାଣି ଅଗଣା
ରକ୍ତରଶ୍ମି ତହିଁ ସିନା ଏ ସନ୍ଧ୍ୟା ଲୋହିତା
ଚିତାବହ୍ନି ତା'ର ଏହି ଅସ୍ତଗାମୀ ରବି,
ନରାସ୍ଥି ଏ ତାରାମାଳା ନୃକପାଳ ଶଶୀ,
ଏ ନୈଶ ଅନ୍ଧାର ତାର ଧୂମର ପଟଳୀ,
ଅହୋ, କିବା ଭୟଙ୍କର ଶ୍ମଶାନ ଶବଶ !
ଗମ୍ଭୀର ଭୀଷଣ କେତେ ଦଶନ୍ତ ରୌଦ୍ରରେ ।

□□□

ଗଙ୍ଗାଧର ମେହେର

## ଉତ୍କଳଭାରତୀଙ୍କ ଉକ୍ତି

ଛନ୍ଦ ବାବୁ ମୋର କୋମଳ ବସନ
ଅଙ୍ଗକୁ ଯହିଁରେ ନ ହେବ ପୀଡ଼ା,
ଦେବ ଦେଲେ ଦିଅ ଏମନ୍ତ ଭୂଷଣ
ଯାହା ପେନ ମୋର ନ ହେବ ବ୍ରୀଡ଼ା ।
ଅଙ୍ଗ ଚାହିଁ ଦିଅ ଯୋଗ୍ୟ ପରିଚ୍ଛଦ
ପରିଚ୍ଛଦ ଯୋଗୁଁ ନ କାଟ ଦେହ,
କଷ୍ଟ ହେଲେ ହେବ ଜୀବନେ ବିପଦ
ନ କର ମାତାକୁ ସେପରି ସ୍ନେହ ।

ନଖ ବଢ଼ିଥିଲେ କର କରତନ
ରଞ୍ଜି ଦିଅ ତହିଁ ଅଲତା ରଙ୍ଗ,
ନାକ ବଡ଼ ଥିଲେ ତା କଲେ ଛେଦନ
ହେବ ନାହିଁ କି ମୋ ସୌଷ୍ଠବ ଭଙ୍ଗ ?

ରୋଗ ଦେହେ ଥିଲେ ପ୍ରତୀକାର କର
ପ୍ରକୃତିସ୍ଥ ହେଉ ଜୀବନ ମୋର,
ଭିନ୍ନବର୍ଣ୍ଣେ ଯଦି ରଞ୍ଜ କଳେବର
ହେବ ମାତ୍ର ତହିଁ ବୀଭତ୍ସ ଘୋର ।

ତୁମେ ମୋତେ ଯେଉଁ ବେଶରେ ସାଜିବ
ସେ ବେଶେ ସାଜିବେ ଜଗତଜନେ,
ତୁମେ ମୋତେ ଯଦି ଯତନେ ମାଜିବ
ମାର୍ଜିତ ଉଜ୍ଜ୍ୱଳ ହେବ ଭୁବନେ ।

ଦେଉ ଦେଉ ମୋର ନୟନେ ଅଞ୍ଜନ
ମୁଖ ଯଦି ହେବ କାଳିମାମୟ,
ପୋଛ ଗଣ୍ଡ କାଳି ନ ଦେଇ ଅଞ୍ଜନ
ହେବ ମନୋହର କାନ୍ତି ଉଦୟ ।

ପାଇଥିଲେ ଦିଅ ବିଲାତି ପ୍ରସୂନ
ଥାଏ ଯଦି ତହିଁ କିଛି ସୌରଭ,
ସୌରଭ ନ ଥିଲେ କାନ୍ତିରେ ନିଉନ
ନ ଥିଲେ, ବଢ଼ିବ ସିନା ଗୌରବ ।

ମସ୍ତକେ ମୋ ଟୋପି ନ ଦେବ ବାବାରେ
ନ କାଢ଼ିବ ମୋର କରୁ କଙ୍କଣ,
ସିନ୍ଦୂରବିନ୍ଦୁ ମୋ ଭାଲେ ରଖିବାରେ
ନିରନ୍ତର ମନେ ଥିବ ସ୍ମରଣ ।

ଭାଇ ଭାଇ ମଧ୍ୟେ କଳହ ନ କର
ତୁମ୍ଭ କଳହେ ମୁଁ ହେବ ଦୂଷିତ,
ରତନ ସଂଗ୍ରହେ ହୁଅ ଯତ୍ନପର
ରତ୍ନ ଖଞ୍ଜି ମୋତେ କର ଭୂଷିତ ।

ଅଭିମାନ ବେଗେ　　　　ନ କର ପ୍ରଳାପ
ପ୍ରଳାପ ଶୁଣିଲେ କାନ୍ଦେ ମୋ ହୃଦ,
ଜ୍ଞାନେ ଧ୍ୟାନ ରଖ　　　　କର ସଦାଳାପ
ସଦାଳାପେ ସଦା ବଢ଼ୁ ମୋ ମୁଦ ।

ମନ୍ଦିରକୁ ମୋର　　　　କର ସୁସଜ୍ଜିତ
ରମ୍ୟ ରମ୍ୟ ଉପକରଣ ଆଣି,
କାଠ ସ୍ତମ୍ଭମାନ　　　　କର ସୁସଜ୍ଜିତ
ଢାଳଦିଅ ତହିଁ ସୁବର୍ଣ୍ଣପାଣି ।

ନାନା ଦେଶୁଁ ଆଣି　　　　ତରୁବଲ୍ଲୀମାନ
ରୋପଣ କର ମୋ ଉଦ୍ୟାନ ଗର୍ଭେ,
ଉଦ୍ୟାନ କରିବ　　　　ସୁଫଳ ପ୍ରଦାନେ
ଭୁଞ୍ଜିବ ସୁଖେ ମୋ ନନ୍ଦନ ସର୍ବେ ।

ଆବର୍ଜ୍ଜନାହୀନ　　　　କର ମୋ ସଦନ
କର ଆବଶ୍ୟକ ଜୀର୍ଣ୍ଣ ସଂସ୍କାର,
ମାନ୍ୟ ଧର୍ମ ରଖି　　　　କର ବିଚରଣ
ନ କର ମୋ ପୁରେ ଯଥେଚ୍ଛାଚାର ।

ନିଜ ଉନ୍ନତିକି　　　　ଉନ୍ନତି ନ ମଣ
ମୋତେ ନ କରିବା ଯାଏ ଉନ୍ନତ,
ଏକ ତରୁ ତଳେ　　　　ଥିବେ କେତେ ଜଣ
ବନ୍ଧୁ ଜନ, ଫଳ ହୁଏ ପବିତ ।

ତୁମ୍ଭ ରାଜ୍ୟ ଭୂମି　　　　ପ୍ଲାବି ନ ପାରନ୍ତୁ
ଆଣ୍ଡିସ୍ ଗିରିର ଅସଂଖ୍ୟ ଝର,
କେ ହରିବ ତୁମ୍ଭ　　　　ହୃଦୟୁ ତପତ
ନ ବନ୍ଧିଲେ ପୂତ ସ୍ରୋତ ମୋହର ?

ହୋଇ ଏକପ୍ରାଣ　　　　ହୋଇ ଏକମନ
ଉଚ୍ଚତାନେ ଗାଅ "ଭାରତୀ ଜୟ"
ଉଚ୍ଚେ ଟେକ କୀର୍ତ୍ତି-　　　　ପତାକା ଗଗନ
ହୋଇଯାଉ ଶୁଭ୍ର ପତାକାମୟ ।

ଭକ୍ତକବି ମଧୁସୂଦନ ରାଓ

# ଶଙ୍ଖଧ୍ୱନି

(୧)

ପଶ୍ଚିମର ଚକ୍ରବାଳେ ବୁଡ଼ଇ ଭାସ୍କର,
ପ୍ରଶାନ୍ତ ବନାନ୍ତ-ଚ୍ଛାୟା ଆବୋରେ ଅମ୍ବର ।
ନିଃଶବ୍ଦେ ଗମ୍ଭୀରେ ଧୀରେ ସନ୍ଧ୍ୟା ଶାନ୍ତିମୟୀ
ଶାନ୍ତ ମହୀଶିରେ ଶାନ୍ତିବାରି ବରଷଇ ।
ଦିବା ଅବସାନେ ଶାନ୍ତ ମୁହିଁ ପାନ୍ଥଜନ
ଗୃହ ଧ୍ୟାନେ ଚାଲୁଅଛି ଚଞ୍ଚଳ ଚରଣ ।
ସହସା ସୁଦୂର ଗ୍ରାମେ ବାଜେ ଶଙ୍ଖଧ୍ୱନି,
ସ୍ପନ୍ଦିତ ସେ ନାଦେ ଯେସ୍ନେ ନିଖିଳ ଅବନୀ ।
କ୍ଷଣେ କର୍ଣ୍ଣେ ଡେଉ ଆହା ସେ ସ୍ୱରଲହରୀ
ଶୁଣିଲି ମୁଁ ଆଚମ୍ବିତେ ସ୍ୱପ୍ନାବିଷ୍ଟ ପରି ।
ତହୁଁ ମହା ଜାଗରଣେ ଜାଗିଲା ମୋ ପ୍ରାଣ,
ଶୁଣିଲି ସେ ଧ୍ୱନି ମଧ୍ୟେ ମହାସିନ୍ଧୁ-ତାନ
ଅନନ୍ତ ଅର୍ଣ୍ଣବ ଧ୍ୱନି ମହାମହୋଦାର
ଅର୍ଣ୍ଣବ-ସମ୍ଭବ ଶଙ୍ଖେ କରୁଛି ବିହାର ।

(୨)

ମହା-ଅର୍ଣ୍ଣବର ଆହା-ପ୍ରଣବ ଝଙ୍କାର
ମନ୍ଦ୍ର ନାଦେ ଶଙ୍ଖ ଆହା ଘୋଷେ ଅନିବାର ।
'ଅନନ୍ତ ଅପାର ସିନ୍ଧୁ ମୋର ମହାଲୟ
ମୋ ଅନ୍ତର ଅନନ୍ତର ନାଦେ ନାଦମୟ,
ସେ ଅମୃତ ଆଲୟରୁ ହୋଇ ଅନ୍ତରିତ
ଭୁଲିବି କି ମୋହେ ତା'ର ଅମୃତ ସଙ୍ଗୀତ ?

କ୍ଷୁଦ୍ରାଦପି କ୍ଷୁଦ୍ରତର ମର୍ତ୍ତ୍ୟ ତୃଣ ପାଇଁ
ଅବିଦ୍ୟା-ପ୍ରମାଦେ ପାନ୍ଥ ହେଲ କି ହେ ଭାଇ ?
କେମନ୍ତେ ହେ ପାସୋରିଲ ଜନ୍ମଭୂମି କଥା
କାହିଁ ତୁମ୍ଭ ରସନାରେ ଅମୃତ ବାରତା ?
ଆସ ଆସ ସୁଗମ୍ଭୀର ମହାବେଦ-ତାନେ
ଜଗତେ ଜଗାଅ ସବ ଅନନ୍ତ ସନ୍ତାନେ ।
ଅନନ୍ତେ ଜୀବନ-ସ୍ଫୂର୍ତ୍ତି, ଅନନ୍ତେ ଅଭୟ;
ମର୍ତ୍ତ୍ୟ-ପ୍ରବାସରେ ଗାଅ ଅମୃତର ଜୟ ।

□□□

ପଲ୍ଲୀକବି ନନ୍ଦକିଶୋର ବଳ

## ବିଚ୍ଛେଦେ

ମେଘ ବରଷଇ ବିଜୁଳି ମାରଇ
ବାଆ ବହେ ସୁଲୁ ସୁଲୁ,
ଘୋର ଅନ୍ଧାରରେ ବରଷାର ନୀର
ଝରୁଥାଏ ଝୁରୁଝୁରୁ ।
ପଡ଼ି ଧରାତଳ ଗଡ଼ିଯାଏ ଜଳ
ନାଳେ ନାଳେ କୁଳୁକୁଳୁ,
ତରୁ ଡାଳେ ଡାଳେ ଉଡ଼ି ମାଳେମାଳେ
ଜୋନାକିଏ ଜୁଳୁଜୁଳୁ ।
ଜଳବିନ୍ଦୁ ଦଳେ ତରୁଲତା ତଳେ
ପଡ଼ି ଟପଟପ ସ୍ୱନ,
ଅଳପବୟସୀ ଦୂର ପରବାସୀ
ଶୁଣନ୍ତେ ଉଦାସ ମନ ।
କେଉଁ ଦୋଷେ ଦୋଷୀ ହେଲେ ପରବାସୀ
କରନ୍ତି ବିଧାତା ଜନେ;

ଏହା ମନେ କରି                    ଦୁଃଖୀ ନରନାରୀ
ବିଧି ନିନ୍ଦେ ମନେ ମନେ ।
କବି କହେ ଧୀମ୍ବୀ,                    ଶୁଣ ଶୁଣ ଭାଇ
ବିଧିକୁ ନ ନିନ୍ଦ ଗ୍ରନ୍ଥେ,
ନୁହ ତରତର                    ସୁଧୀରେ ବିଚାର
ବିଧିଛନ୍ତି ବିଶ୍ୱଦାନ୍ତେ ।
ବିଚ୍ଛେଦ ମିଳନ                    ସୋଦର ସମାନ
ଏକ ପାଖେ ଥାଏ ଆନ,
ଅଭିନ୍ନ ଅନ୍ତର                    ବିବାଦ ତାଙ୍କର
ବିଚିତ୍ର ବିଧି ବିଧାନ ।
ମିଳନେ ଜନ୍ମଇ                    ବିଚ୍ଛେଦେ ବଢ଼ଇ
ପ୍ରୀତିର ଏହି ଲକ୍ଷଣ,
ପୀରତି କନକ                    ଦିଶେ ଜକଜକ
ବିରହ-ବହ୍ନି-କଷଣ ।
ପ୍ରଥମ ଦର୍ଶନେ                    ଜାତ ହୁଏ ମନେ
ଅପୂର୍ବ ପ୍ରୀତି ଅଙ୍କୁର,
ବିଶଚକ୍ଷୁ କୋଣେ                    ମଧୁର ମିଳନେ
ପିଏ ସେ ରସ ମଧୁର ।
କାଳେ ସେ ଉଭାଏ                    କେଣେ ଚାଲିଯାଏ,
ମିଳନ ଅନ୍ତେ ବିରହ,
କବି ପଚାରଇ                    ଏହି କାଣ୍ଡ ଭାଇ,
କେଉଁଠି ନହୁଏ କହ ?
ସତୀ ଦମୟନ୍ତୀ                    ଜାନକୀ ପାର୍ବତୀ
ଶକୁନ୍ତଳା ଆଦି ଯେତେ,
ବିଚ୍ଛେଦେ ମିଳନ                    ଜଗତ-ଜୀବନ
ବର୍ଣ୍ଣିବି ମୁଁ ଆଉ କେତେ ?
ଗୋପପୁରବାସ                    ମଥୁରା ପ୍ରବାସ
ପ୍ରଭାସ-ମିଳନ-ଲୀଳା,
ଅଯୋଧ୍ୟା-ଜୀବନ                    ଲଙ୍କା-ଅପମାନ
ଅନ୍ତେ ଅଭିଷେକ ଖେଳା ।

ଏଇ ପ୍ରୀତି ଗୀତ, ଯୁଗ ଯାଏ ବିତ,
ଯାଆଁଲା ଭାଇ ସେ ବୁହେଁ
ବିଚ୍ଛେଦ-ମିଳନ ରାଧାରାନନ୍ଦନ
ଭଲ ଭଲ କବି କହେ ।

□□□

କୁନ୍ତଳାକୁମାରୀ ସାବତ

## ଅଭିଶପ୍ତର ଅଭିମାନ

ଜାଣେ ଏ ଜୀବନ କେଭେଁ ନ ହେବ ବିଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ
ନିବିଡ଼ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ ।
ଅମୀୟ ଅରୁଣ ଗୀତ
ବିନାଶିବ ଚିର ରୀତ,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବି ଜାଗିବ, ଦୀପ୍ତ ଆଶା ମୋର ମନେ ।

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୂଷଣ ଶ୍ରାନ୍ତି,
ଘେରିଛୁ ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ ।
ଅମୃତ ସନ୍ତାନ ମୁହିଁ ସୁଧା-ଅଧିକାରୀ,
ଅନନ୍ତ ଉର୍ମିର ତଳେ ଦୀପ୍ତ ଦୀପଧାରୀ ।
ଲାଞ୍ଛନା ଗଞ୍ଜନା ଶତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ପୀଡ଼ଇ ମରମେ,

ତୀକ୍ଷ୍ଣ ଶେଲ ଶିଳା ଅବା କଠିନ କୁଳିଶ-
ପ୍ରହାରେ ଜର୍ଜର ହୁଏ, ଜୀବନ ମୋ ବପୁ,
ତଥାପି ଅମର ମୁହିଁ ମାନବସନ୍ତାନ,
ବ୍ୟଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।
ତିଳେ ତିଳେ ଏ ଜୀବନ
କରୁଅଛି ନିବେଦନ,
ଯାର ସୃଷ୍ଟି ଯାର ମୁହିଁ ପ୍ରଚ୍ଛନ୍ନ ଦେବତା,
କରମକରତା ମୁହିଁ ମୋ ଭାଗ୍ୟନିୟନ୍ତା ।

କରୁଛ କି ପରିହାସ ଦେଖି ଦୀନବେଶ,
ଅର୍ଦ୍ଧ-ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଲେଶ ?
ତପତ ତପନ ତଳେ ତିନ୍ତ ସ୍ୱେଦଜଳେ
ରୁକ୍ଷ ବକ୍ଷଧାରି ମୁହିଁ ଚଷଇ ଲଙ୍ଗଳେ;
ଅବା ଭିକ୍ଷାପାତ୍ର ଧରି,
ସରମେ ମରମେ ସରି,
ତବ ରମ୍ୟ ହର୍ମ୍ୟ ତୋରି ତୋରଣ ସମ୍ମୁଖେ
କ୍ଲାନ୍ତ ପଦକ୍ଷେପେ ଆସେ, ନ ହସୁଁଛ ମୁଖେ ।

ଲଜେ ପୋତ ମଥା ଦୂରେ ଯାଅ ମୋର ଭାଇ,
ନ ଚାହଁ ନ ଚାହଁ ମୋତେ ନ ହେବ ବଥାଇ ।
ତିଳେ ତିଳେ ପ୍ରାଣ ମୋର କରିବ ଅର୍ପଣ
ତବ ଶତ ସୁଖ ଯହିଁ ହେବଟି ବର୍ଦ୍ଧନ ।
ବଞ୍ଚିବାର ଅଧିକାର ରଖି ଚିରଦିନ,
ମରଣେ ସମ୍ବଳ କରି ହେଉଥାଏ କ୍ଷୀଣ ।
ତଥାପି ମରିବ ନାହିଁ
ମନେରଖ ଏହା ଭାଇ,
ଅକାରଣେ ଜନ୍ମ ମୋର ନ ହେଲା ଭୂତଳେ;
ଅନନ୍ତ ବିନାଶ ଯେନ ମରିବ ବିରଲେ ।

ଅନନ୍ତ ବିକାଶ ମମ
ଚିରନ୍ତନ ଅନୁପମ,
କଷଣ-କର୍ଦ୍ଦମେ ପଦ୍ମ ମୁହିଁ ଶତଦଳ,
ନ ଛିଡ଼ିବ ବିଫଳ ମୋର ତପ୍ତ ନେତ୍ରଜଳ ।
ପାଷାଣେ ପିଟୁଛି ଭାଗ୍ୟ ବଞ୍ଚିଣଛ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦୟା ।
ଭିକାପନେ ସ୍ୱଚ୍ଛ ମନେ ଆରାମ ଶୟନେ
ହରୁଛ ଦିବସ ନିଶି, କାନ୍ଦେ ମୁଁ ଅସ୍ୱନେ ।
ମୋ ରକ୍ତ ତପତ ଧାରେ,
ମୋର କ୍ରୂର ହାହାକାରେ
ବୃଦ୍ଧିରହିଅଛି ତବ ଜୀବନ ସମ୍ପଦ;
ନ ମିଳେ ମୁକତି ମୋତେ ଧାୟିଣ ଶ୍ରୀପଦ ।

ତୁମେ ବୀର, ତୁମେ ଗୁଣୀ;
ମୁଁ ହୀନ ଅଜ୍ଞାନ ଋଣୀ ।
ତୁମର ସଭ୍ୟତା ପାଶେ ତୁମର ଆଲୋକେ;
ତୁମ ବିନା ବାସ ମୋର ଅନନ୍ତ ନରକେ ।
ନ ଭାବ ନ ଭାବ ଭାଇ,
କେହି କେବେ ଶୁଝନାହିଁ;
କଷ୍ଟୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି ।
ଥାଅ ସୁଖେ; ଭୋଗେ ମୁହିଁ କଷ୍ଟ କୋଟି କୋଟି ।

× × ×

ଅକାରଣେ କ୍ରୌଞ୍ଚ ପକ୍ଷୀ ନ ତେଜିବ ଜୀବ;
ରାମାୟଣ-ପଣା ପରି ପୃଥିବୀ ପିଇବ;
କବିକୁଳଗୁରୁ ହେବେ ଚୋର ରତ୍ନାକର;
ବୋଲାଇବେ ବାଲ୍ମୀକି ମହର୍ଷିପ୍ରବର;
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀତ୍ୱ ଗୌରବ ପରି ଉଠିବ ମସ୍ତକ ।
ପାଇ ପୂତ ଅଧିକାର
ରଘୁନାଥ ନେତ୍ରଧାର,

ପୋଛୁ ଲବ'କୁଶ ଯୁଗ ଧନ୍ୟ ହେବେ ଭବେ,
ଅକାରଣେ କୈାଶିକୀ ଶୋକ ନ କଲ୍ଲ ବୈଧବ୍ୟେ ।

× × /

ଆଜି ଆରୁ ଆମ ଭାଳେ ଦଳୁଛ ଦରପେ,
ଅସହାୟ, ହୀନ, ଭସ୍ମେ ପରାଣ ଅରପେ;
ଚିରଦିନ ସମତୁଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ହେବି ମୁଁ ଉପର;
ତୁମର କଣ୍ଟ ମୋର ହେବ ଶିରଶୋଭା,
ମୋହର ମୋହିନୀ ଦିନେ ହେବ ମନଲୋଭା ।
ଆଜି ଯା'ରେ ପଦାଘାତ
କାଲି ତା'ର ଧରି ହାତ
ଆଦରେ ଅଞ୍ଚଳନିଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ ।

ବଳ ! ପଦଦଳା ତବ ସହିବ ନୀରବେ,
ଗୋଟିଏ କଥା ମୋ ମୁଖେ ନ ଶୁଣିବ ଭବେ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରିବ ଧ୍ୱଂସିତ ତବ ଅହଙ୍କାରୀ ପ୍ରାଣ ।
ଆଜି ଯା'କୁ ତୃଣସମ କର ତୁଚ୍ଛ ହେୟ,
ଆଜି ଯେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲି ପୂଜାଫୁଲ ହେବ ତା'ର ପାଦତଳେ ।
ଆଜି ତୁମେ ଯା'ର ରିପୁ
କାଲି ତବ ପ୍ରେମବାହୁ
କରି ଆଲିଙ୍ଗନ ତାକୁ ଦେବ ଦେବାସନ
ତା'ଗୁଣେ ମୋହିବ ତମ ମୂଢ଼ ଅନ୍ଧ ମନ ।

ଅସ୍ପୃଶ୍ୟ ଇତର ମୁହିଁ ଘୃଣିତ ଚଣ୍ଡାଳ
କରେ ପରିଷ୍କାର ତବ ନରକ ଜଞ୍ଜାଳ;
କାନ୍ଧେ ବହିନିଏ ବୋଲି ପ୍ରଖର ଖରରେ
'ବେହେରା', 'ବେହେରା' ଡାକ ଶୁଣାଅ ଶ୍ରଦ୍ଧାରେ ।

ମୁହିଁ ପଦସେବାକାଂକ୍ଷୀ
ଭୃତ୍ୟ, ପୂଜାର୍ଥୀ, ଭିକ୍ଷାରି
ବୋଲାଉଛ ବାରୁ ବସି ଉଚ୍ଚ ଆସନରେ
ଲଜ୍ଜା ଲୁଚାଅ କିନ୍ତୁ ମୋ ଦତ୍ତ ବସନରେ;
ମୋ ଦତ୍ତ ଅଶନ ପୁଣି ନିସ୍ୱତ୍ତ ଭୋଜନ
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ରୋଦନ ।

× × ×

ଭଲ ମୋ ମୂର୍ଖତା ସୁଖେ ଦିଅ କରତାଳି,
ମରେ ମୁଁ ଦରିଦ୍ର କ୍ଷୋଭେ ଚକ୍ଷେ ଚିତା ଜାଳି;
ନାହିଁ ମୋର ବାସ, ଅଛି ମହାକାଶତଳେ;
ନାହିଁ ମୋର ହେମଶଯ୍ୟା ଶୁଏ ମୁଁ ଭୂତଳେ,
ଶୀତ ଖରା ବରଷାରେ
ପ୍ରକୃତିର ଅତ୍ୟାଚାରେ
କ୍ଷୀଣ ଅଙ୍ଗଶିଖା ସର ଆୟୁ ଯାଏ ହର,
ତଥାପି ବଞ୍ଚିବ ନିଷ୍ଠେ ଏ କଷଣେ ମର ।
ମରଣ ନୁହେଁ ମୋ କ୍ଲେଶ
ନୁହେଁ ତା ବିନାଶ, ଶେଷ,
ଅଦ୍ଭୁତ ସୁନ୍ଦର ନବଜୀବନ ଆରମ୍ଭ
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?
ସମ୍ବଳହୀନର ଶେଷ ଆଶାର ସମ୍ବଳ
କାଢ଼ିନେଲେ ଶୀତେ ଯଥା ଶୀତାର୍ତ୍ତ କମ୍ବଳ;
ସବଲ ମହତ ଏକ କରମ ସାଧିଲ
ବୈରଭାବେ ହୀନ ଅରି ଜୀବନ ବଧିଲ ।
କିନ୍ତୁ 'ରକ୍ତବୀଜ' କେବେ ମରି ସେ ନମରେ ।
ଶତ ଶତ ଦୈତ୍ୟ ଜାତ ବିନ୍ଦୁ ଏ ରକ୍ତରେ ।
ଖଡ୍‌ଗହସ୍ତେ ହାଣି ଶିର
ବୁହାଇଲ ସେ ରୁଧିର,
ବିନ୍ଦୁ ସିନ୍ଧୁ ହୋଇ ଶେଷେ ବୁଡ଼ିବ ଆପଣ
ଲଭିବ ତ ପ୍ରତିଫଳ କୃପାରେ କୃପାଣ ।

× × ×

□□□

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

## ଚିର-ଶିଖେ ଲକ୍ଷ୍ୟ ରଖି ଚାଲିବ ମୁକତ

ଯେତେ ଦୂର ଯାଏ ଚାଲି
ଚଉପାଶେ ଖାଲି ବାଲି,
ନାହିଁ କାହିଁ ଶ୍ୟାମଶସ୍ୟ ନବ ଦୂର୍ବାଦଲ,
ନାହିଁ ଲତା, ନାହିଁ ତରୁ,
କେବଲ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଲ ଫୁଲ ଅବା ଫଲ ।
ସୁନୀଲ ସୁନ୍ଦର ଗିରି
ଧରି ଅନୁପମ ଶିରୀ
ଦିଶୁଥିଲା ଅଲ୍ପ ଦୂରେ ଚକ୍ରବାଲ ମୂଲେ,
ଉଜ୍ଜ୍ୱଲ ତାରକାରାଶି
ଦିବ୍ୟ ଆଲୋକେ ବିଭାସି
ନିରନ୍ତର ଶୋଭୁଥିଲା ତାର ଶୃଙ୍ଗ ଚୂଲେ ।
ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ
ହେବ ବୋଲି ଏତେ ଦୂର ଏ ବିଷମ ପଥ,
କ୍ରମେ ବଢ଼ିଯାଏ କାଲ
କ୍ରମେ ଘୂଞ୍ଚେ ଚକ୍ରବାଲ
ଶିଥିଲ ସୈକତେ ଚଲେ ମୋର ମନୋରଥ ।
ଆଉ କେତେ ଦିନ ଅନ୍ତେ
ଏ ଦୁସ୍ତର ବାଲିବନ୍ତେ
ନ ଚଲି ରହିବ ପାଦ ସିନା ଥକାମାରି
ନ ଦେଖିବ ଜନ ଆଖି,
ଘୋର ପନ୍ଥାରେ ଏକାକୀ
ଚାଲିଯିବ ଯତେ ପ୍ରାଣ ବୃଥା ଘାରି ଘାରି ।
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ହେଲେ ହେଉ ଯେତେ ଦୂର ଏ ଦୁର୍ଗମ ପଥ,

କହ କେଉଁ ମୂଢ଼ ଜନ
କରି ଥରେ ବିଲୋକନ
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?
ଅବସନ୍ନ ହେଲେ କାୟା
ଆଶ୍ରିବ ଏ ଗିରିଚ୍ଛାୟା,
ବାଲ୍ୟଶେଷେ ଶୋଇବଇଁ ଯାଇ ଅଧେ ବାଟ,
ତାରକିତ ଗିରି-ଚୂଡ଼େ
• ନିବେଶି ନୟନ ଦୂରେ
ଫେଡ଼ିବ ପରମ ସୁଖେ ହୃଦୟ-କବାଟ ।
ସୁଦୂର ସାଗର-ଗୀତି
ଶ୍ରବଣେ ସ୍ୱର୍ଗୀୟ ପ୍ରୀତି
ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ,
ଅନୁସରି ସେହି ଗାନ
କରି ମନେ ଏକ ଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।
ଦେଖି ଚନ୍ଦ୍ର-ଗୁରୁ ଅଙ୍ଗ
ଲଭିବାକୁ ତାର ସଙ୍ଗ
ଧାଇଁ ଧାଇଁ ପଥେ ଶଶା ଛାଡ଼ିଲା ପରାଣ,
କେତେ ଦୂରେ ନିଶାପତି
କାନ୍ଦିବା ଶଶକ ଗତି
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ !
ଶତ ଶଶୀ ବଳି ଶୋଭା
କି ବିଚିତ୍ର ମନୋଲୋଭା,
କିପରି ଏହାର ଆଶା ଛାଡ଼ିବ ମୁଁ ନର,
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରି-ଶିଖେ ଲକ୍ଷ୍ୟ ରଖି ଗୁଞ୍ଜିବ ମୁକର ।

□□□

ନୀଳକଣ୍ଠ ଦାସ

## 'ଆହ୍ବାରେ ଦଇବ'...*

ଆହ୍ବାରେ ଦଇବ କି କଲୁ ରୁ ସତେ
ଘର ବୋଲିବାକୁ ନଫିଟେ ସ୍ୱର,
ଏ ନୀଳ ବିପିନ ଶ୍ୟାମଳ କେଦାରେ
କେତେ ପୁରପଲ୍ଲୀ ହେଉଛି ଦୂର !
ଅନାହାରେ ମରେ କୃଷକ ମଉନେ
କିଏ ଜାଣୁଛି ତା ବେଦନା ଥଳେ !
ରାଜ-ଜନ ବୋଲି ବଂଚକ ତସ୍କର
ବୁଲୁଛନ୍ତି ଗ୍ରାମ ବିପିନ ବଲେ,
ଯାଅ ମହାନଦୀ ବନ୍ଧ ପାରିବାରେ
ଭସ୍ମେ ଚୁମ୍ବି ପଦେ ସେ ରାଜପୁର,
ବିଦେଶୀ ତସ୍କର ଦସ୍ୟୁ ପଦାଘାତେ
ପ୍ରସାର ଉତ୍କଳ ଜନନୀ ଉର ।
ଜନନୀ ଜନନୀ ବୋଲୁଥିଲି ତୋରେ
ରଖି ନପାରିଲି ଗାରିମା ତବ,
ଶତ-ନଦୀ-ଧାରେ ଲୋତକର ଧାରି
ଦେଖି ଯାଉଅଛୁ ଗୁଡ଼ି ଏ ଭବ ।
ଶ୍ୟାମଳ କାନନେ ଝେଲାଇଲୁ ମାତ,
ବଢ଼ାଇଲୁ ଦେଇ ଜୀବନ ପସ୍ତ,
ହେଲି ତୋ ସମ୍ପଦ ତୋହରି ଭଗାରି
ଫଡାନେ ଘୋଟିଲି ତସ୍କର ଭସ୍ମ ।
ଜନମ-ଭୂଇଁ ତୁ ଜନନୀ ମୋହର
ଜୀବନେ କେସନେ ଭୁଲିବି ତୋତେ ?
ଯାଉଛୁ ବରଜ ଦିଅ ମା' ବିଦାୟ
ଅଲଝଲି ମୋର ସହୁଛୁ କେତେ ।

---

* 'ମାୟାଦେବୀ'ର ଏକାଂଶ

ତୋହର ହୃଦୟୁ ଚିର ମୁଁ ଖାଇଛୁ
ପିଇଛୁ ତୋହର ଜୀବନ-ଧାର,
ତେବେହେଁ ହୃଦୟେ ରଖିବୁ ଆଦର
ମରଣେ ଏ ମୋର ଶରୀର ଭାର ।
ସ୍ୱଦେଶ ତ ମୁହିଁ ଯାଇ ନାହିଁ କେବେ
କେମନ୍ତେ ଜାଣିବ ବିରହ ଖେଦ,
ଅନ୍ତେ ଦୂର କେବେ ପାଶ୍ୱରେ ଗଲେ
ଭୁଲି ନ ପାରଇ ତୋର ସମ୍ପଦ ।
ଚିର ଲାଗି ଏବେ ଯାଉଅଛୁ ମୁହିଁ
ଯେ ଦେଶେ, ସେ ଦେଶୁ ଫେରନ୍ତି ନାହିଁ,
ନରକେ କି ନବେ ସ୍ୱରଗେ କି ଥିଲେ
କେମନ୍ତେ ସେ କଥା ଜାଣିବ ମୁହିଁ ?
ତୋତେ ଛାଡ଼ି କେଉଁ ସ୍ୱରଗେ ରହିବ
ଅନନ୍ତ-ବିରହ-ଅନଳେ-ଜଳି ?
ନାହିଁ କି ନରକ ଏ ବନେ କୁମାର ?
'ଦିଅ ମୋତେ ସେହି ନରକେ ପେଲି ।'

□□□

ପଣ୍ଡିତ ଗୋଦାବରୀଶ ମିଶ୍ର

## ଶୂନ୍ୟମନେ

ଶୂନ୍ୟମନେ ତରୁତଳେ ବସିଛୁ ମୁଁ ଏକା,
କେତେ କିଏ ଆସି ବାରେ ଦେଇଯାନ୍ତି ଦେଖା;
କାନନର ତରୁଲତା,
କୁସୁମର ମଧୁରତା,
ମୃଦୁ ଖେଳେ ସମୀରଣ,
କୋକିଳର କୁହୁ ସ୍ୱନ,
ମହୁମାଛି ଗୁଞ୍ଜନର ଗୂଢ଼ ମାଧୁରିମା
ସୁଦୂର ଗଗନ ଅଙ୍ଗ ଅନନ୍ତ ନୀଳିମା ।

ନିଜ ନିଜ ପଥେ ଆସି, ମୋ ହୃଦ ଦୁଆରେ
ନିମିଷକ ଦରଶନ ଦେଇଯାନ୍ତି ବାରେ ।
ସରବେ ସେ ହୃଦେ ମୋର
ଅଜଣା ଅଚିହ୍ନା ଘୋର,
ତିଳେ ତାଙ୍କୁ ଭବେ ମୋର ନ ଲୋଡ଼େ ପରାଣ,
କି ଦୂର ଅପ୍ରାପ୍ୟ କାହିଁ ରଖିଛି ଧିଆନ ।
ଶୂନ୍ୟମନେ ତରୁତଳେ ବସିଛି ମୁଁ ଗୃହିଁ,
କେତେ କିଏ ଆସି ବେଗେ ଯାଆନ୍ତି ପଳାଇ ।
ଶୂନ୍ୟ ମୋ ନୟନ ଆଗେ
ଗମ୍ଭୀର ନୀରବେ ଏବେ
ମୋ ନିଶ୍ଚଳ ଅବୟବେ
ଫୁଲଟିଏ ଝଡ଼ି ଆହା ଅନାଏ ସରାଗେ !
ଦେଖିବାକୁ ହସ ତାର
ନାହିଁଟି ମୋ ଅବସର
ସିଏ ଯହିଁ ଯାଇଥିଲା
ଫେରି କାହିଁ ଆସିଗଲା;
ମୋ କୁଟୀରେ ପୂର୍ଣ୍ଣ ଏବେ ଅଯୁତ ଅତିଥି,
ସଭିଙ୍କି ଦିଏ ମୁଁ ସୁଖେ ମିଳନ ପୀରତି ।
ସରବେ ମୋ ପରିଚିତ
ପୁରୁଣା ପରାଣ ମିତ ।
କିଛିତ ଯେ ଭେଦ ନାହିଁ ତହିଁ,
ଆଲିଙ୍ଗନେ ହୃଦେ ରଖେ ନିତି ।
ତାଙ୍କ ସଙ୍ଗେ ମୁହିଁ ପୁଣି ହୋଇଯାଏ ଜଣେ;
ଆନ କେହି ନାହିଁ ପାଶେ,
ଆନ ଜ୍ଞାନ ନାହିଁ ଆସେ
ମୁଁ ଏକ ଅତିଥି ମହା ଅତିଥି ମିଳନେ ।
ଶୂନ୍ୟମନେ ତରୁ ତଳେ ବସିଥିଲି ଏକା,
କିଏ ଆସି କେବେ ମୋରେ ଦେଇଗଲା ଦେଖା;
କିଏ ଖୋଲିଗଲା ମୋର ଦୁଆର ଫିଟାଇ,
ଏ ସମ୍ପଦ ମୋ କୁଟୀରେ ଦେଇଗଲା ଥୋଇ,
କାହିଁ ହରିନେଇଗଲା ମୋ ଦୀନ ପସରା,
ଶୂନ୍ୟମନେ ବସିଥିଲି ପରା ।

ପଦ୍ମଚରଣ ପଟ୍ଟନାୟକ

## ଯୌବନର ଅଭିଯାନ

କିଏ ଏଣୁ ଆଜି ଗଲା ଜୈତ୍ରଯାତ୍ରା କରି ଗୋ,
ପାଛେ ଶୁଭେ ମହାରବ ଧର ଧର ଧର ଗୋ ।
ଏ ଯେ ଅଭିନବ ସେନା ନବ ଅଭିଯାନ ଗୋ,
ନବ ନବ ଅସ୍ତ୍ରଶସ୍ତ୍ର ନବ ତୀର ବାଣ ଗୋ ।
ଢାଲ, ବାଣ, ତରବାରି ସବୁ ନୂଆ ନୂଆ ଗୋ,
ନରପାଶେ ନାରୀଦଳ ଏ ସୈନ୍ୟରେ ଠିଆ ଗୋ !
ନାହିଁ ଢାଳେ ରକ୍ତପାତ ଯୁଝି ଚଳେ ଗୋପନେ,
ଜେତା ପାଶେ ପରାଜିତ ହସେ ନିଜ ମରଣେ ।
ନବ ତେଜ ନବ ଶକ୍ତି ଅଙ୍ଗେ ଅଙ୍ଗେ ଭରି ଗୋ,
ଶୋଭି ସଉରଭେ କ୍ଷଣେ ପୂରେ ବସୁନ୍ଧରି ଗୋ ।
ତରଳ ଅପାଙ୍ଗ ପାଶେ ସ୍ମିତ ହୁଏ ଠିଆ ଗୋ,
କ୍ଷଣେ କ୍ଷଣେ ଉଚ୍ଚାଟନ ବିଦାରଇ ହିଆ ଗୋ ।
ନାହିଁ ସ୍ୱେଦ, ନାହିଁ କ୍ଲେଦ, ନାହିଁ ଭେଦଜ୍ଞାନ ଗୋ,
ଯେଣୁ ଦେଖେ ମନ୍ତ୍ରମୁଗ୍ଧ ବିଚଳିତ ପ୍ରାଣ ଗୋ !
ବାଧା-ବିଘ୍ନ ଭୟ-ଭ୍ରାନ୍ତି ସବୁ ଯାଏ ଘୁଞ୍ଚି ଗୋ,
ପ୍ରେମର କିରଣେ ଯାଏ ଅନ୍ଧକାର ଲୁଚି ଗୋ !
ଉଚ୍ଚ ହିମାଳୟ ଶିର ପଡ଼େ ବେଗେ ନଇଁ ଗୋ,
ସପ୍ତସିନ୍ଧୁ-ବ୍ୟବଧାନ ନ ପାରଇ ରହି ଗୋ !
କୋମଳ ଚରଣେ କଣ୍ଟା ଫୁଟି ରକ୍ତ ଝରେ ଗୋ,
ହସି ହସି ପୋଛେ ନାରୀ ନିଜ ପଣତରେ ଗୋ ।
ଆସ ହେ ଯୌବନ, ଦିଅ ଦେଶ ଶିରେ ଟିକା ଗୋ,
ଲୁଚିଯାଉ ଶ୍ଳଥଚର୍ମ ଶୂନ୍ୟ ବିଭୀଷିକା ଗୋ !
ଲଲାଟେ ଚନ୍ଦନ ଦିଅ ଗୋରୋଚନା ଘୋଟି ଗୋ,
ବଦନେ କୁଙ୍କୁମ ନେତ୍ରେ ସ୍ନେହାଞ୍ଜନ ଗୋଳି ଗୋ !
ଶିରେ ଦିଅ ପାଟଛତା ନବ ଶିରସ୍ତ୍ରାଣ ଗୋ,
ନବରାଜ ଦରବାରେ ବଢ଼ିଯାଉ ମାନ ଗୋ !

ଲୁଟିଯାଉ ଭେଦ ଭ୍ରାନ୍ତ ସ୍ୱାରୂଢା ଅଳକ ଗୋ,
ଗାଇଉଠୁ କୁଞ୍ଜେ କୁଞ୍ଜେ ନବତାନେ ପିକ ଗୋ !
ନୂଆ ରାଗରାଗିଣୀରେ ହେଉ ଦେଶ ଭରା ଗୋ,
ନବପ୍ରାଣେ, ନବତାନେ ଭରିଉଠୁ ଧରା ଗୋ ।
ଶତାବ୍ଦୀର କ୍ଲେଦ ଭେଦ ହେଉ ଭସ୍ମ ଚୂର ଗୋ,
ମାତୃଭୂମି କଣ୍ଠେ ଶୋଭୁ ହୀରକର ହାର ଗୋ ।
ଶିରେ କୋହିନୂର କଣ୍ଠେ କଉସ୍ତୁଭ ରାଜୁ ଗୋ,
ବିପଞ୍ଚୀ ମଧୁର ଶଙ୍ଖ ପୁରେ ପୁରେ ବାଜୁ ଗୋ ।
ଯୁଗ-ଯୁଗ ଅନ୍ଧକାର, ଅତ୍ୟାଚାର ଭୁଲି ଗୋ,
ମାତୃଭୂମି-ବକ୍ଷ ଉଠୁ ପୁଣି ଗର୍ବେ ଫୁଲି ଗୋ ।
ଛୁଟୁ ଶିରା-ପ୍ରଶିରାରେ ଶୋଣିତର ଧାରା ଗୋ,
ହସୁ ଏ ଆନନ୍ଦ ଦେଖି ସରଗର ତାରା ଗୋ ।
ରାଜରାଣୀ ପାଉ ପୁଣି ରାଜରାଣୀ ମାନ ଗୋ,
ପୃଥିବୀପୃଷ୍ଠରେ ରହୁ ମୋ ଜନନୀ ସ୍ଥାନ ଗୋ !



କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

# ଲେଖା

କି ଲେଖା ଲେଖିବି ! ଆଉ ନଚଲେ ଲେଖନୀ,
ଗୀତ ଗାଇବାକୁ ତୁଣ୍ଡେ ବାଜିଲାଣି ଖନି;
କୁନ୍ଥା କଲମଟା ଆଉ ପାରୁନାହିଁ ଟାଣି
ସିହାଇବୁଡ଼ାକ ତେଣେ ଫାଟିଲାଣି ପାଣି ।
ଲେଖୁଥିଲି ଦିନେ,—ଆଉ ଅଛି କି ସେ କାଳ !
ବାଘ ଖାଇଗଲାଣିଟି ସେ କାଳ ପଖାଳ ।
ଓଲଟା ହୋଇଛି ଯାଇ ଯାହା ଥିଲା ଦିନେ,
ଏବକୁ ହେଲାଣି ସବୁ କଥା ଭିନେ ଭିନେ !
ବସନ୍ତ ଗଲାଣି ଚାଲି—ଆସିଲାଣି ଶୀତ,
ଆମ୍ବଡ଼ାଳେ କୋଇଲି ତ ଗାଉନାହିଁ ଗୀତ ।

ଗଲଣି ମଳୟ ଏବେ ବହୁଛୁ ହୁଉରା,
ତୋର ଜହ୍ନ ପଛେ ଆଉ ହସୁନାହିଁ ତରା,
ଫୁଟୁନାହିଁ ପଦ୍ମଫୁଲ ଆଉ ସରୋବରେ,
ଗୁଣୁଗୁଣୁ ଗାଉନାହିଁ ଅଳି ପ୍ରେମଭରେ ।
ବାଉଳା ସ୍ୱରୂପ ଛୁଟେ ହୋଇ ଅଥାନଥା
ଦୁନିଆଯାକରେ ଲାଗିଯାଇଛୁ ଗ୍ରନିଆଁ ।
ନାହିଁ ସ୍ନେହ, ନାହିଁ ପ୍ରୀତି, ମମତା, ପ୍ରଣୟ,
ନାହିଁ ଶ୍ରଦ୍ଧା, ଦେନାଦେନ, ଚଉ ବିନିମୟ ।
କଣେଖିର ମୃଦୁହସ, ସହଜ ଅପାଙ୍ଗ
ମଧୁରିଆ ଲାଜ-ଲୁଙ୍କା ବଚନ ସରାଗ ।
ସଭିଏଁ ତ ବ୍ୟସ୍ତବ୍ୟସ୍ତ ଉଦ୍‌ବେଗର ଦାଉ
ଯାଇଅଛୁ ପୋଛି ଖାଲି ଲାଗିଛୁ ଚଢ଼ାଉ ।
ଦଫା ଦଫା ଧପାଧପି, ଚଳା କଟାକଟି
ପଟି ଚଢ଼ାଚଢ଼ି ଆଉ ମୁଣ୍ଡ ଫଟାଫଟି ।
ଲକେ ସଢ଼ି ସଢ଼ି 'କଳା' ଲୁଚିଲଣି କାହିଁ,
ଅବା କଳା-ବଜାରକୁ ଗଲଣି ପଳାଇ ।
ଏହା ସବୁ ଦେଖି ଦେଖି ମୁଣ୍ଡ ଯାଏ ଭ୍ରମି,
ମରମ ଆବେଗେ ଯେତେ ପଡ଼ଇ ନରମି ।
ଚପୁଡ଼ିଲେ ଲେଖାରୁ ତ ଗଡ଼ୁନାହିଁ ରସ
ଲେଖିବାର ମଜୁରିଟା ମିଳେ ଲୋକହସା ।
ଲେଖିବ କାହିଁକି କେହି—ପଢ଼ୁଚି ବା କିଏ,
ବାଇବିକୁ ପର ହୋଇ ଧାଆନ୍ତି ସଭିଏଁ ।
କାହାର ବା ବେଳ ଅଛୁ ବାଜେକଥା ପାଇଁ,
କି ଲାଭ ଏଥିରେ ବୃଥା ସମୟ କଟାଇ !
ଯେବେ ବା ପଢ଼ୁଚି କେହି—ସିଏ ଖାଲି ଫାଙ୍କି,
ଦସ୍ତାରେ ବୁଲାଇ ନେଇ ଥରେ ମାତ୍ର ଆଖି ।
ଡେବଣ ହାତରେ ଦିଏ ଫୋପାଡ଼ି ସେ ଲେଖା,
ପୋଛି ଦେଇ ମଗଜରୁ ତାର ଶେଷରେଖା ।
ସେଥିକରେ ଲେଖକର ବୈତରଣୀ ପାର,
ଆଉ ତାହା ସଙ୍ଗେ ସପ୍ତପୁରୁଷ ଉଦ୍ଧାର ।

□□□

ଶ୍ରୀ ଅନ୍ନଦାଶଙ୍କର ରାୟ

## ସୃଜନ-ସ୍ୱପ୍ନ

ଶୁଣିବ ଯଦ୍ଧ            ଶୁଣ ଗୋ ରାଣୀ
ସେ ନୁହେଁ ମୋର            ମରମ ବାଣୀ
ସେ ନୁହେଁ ମନକଥା ମୋ ।
ଯେ ଗୀତ ଦେଲ            ସେଦ୍ଧନ ଗାଇ
ସେ ଗୀତେ ମୋର            ହୃଦୟ ନାହିଁ,
ନାହିଁ ସେ ଗୀତେ ବ୍ୟଥା ମୋ ।
କହୁଛୁ ସତ,            ଶୁଣ ମୋ ମିତ,
ଧ୍ୱଂସେ ମୋର            ମନ ନାହିଁ ତ
ସେ ନୁହେଁ ମୋର ବ୍ୟସନ ।
ପ୍ରଳୟ ଧୂମ-            କେତୁ ମୁଁ ନୁହେଁ
ନୁହଇ ଭୂମି-            କର୍ମ ମୁଁ ହେ
ସୃଷ୍ଟି, ସ୍ଥିତ, ନାଶନ ।
ଗୋପନ କଣ            କ ହେବ ପ୍ରିୟା,
ନୁହେଁ ମୁଁ ଝଡ଼            ନୁହେଁ ମୁଁ ନିଆଁ,
ନୁହେଁ ମୁଁ ଶମଶାନ ଗୋ ।
ଅନଲ ଆଣେ            ଆତ୍ମମ ତୃଷା—
ସେ ସିନା ମୋର            ଛଦମ-ଭୂଷା !
ମୋ ତୃଷା ଉଷା ଆନ ଗୋ ।
ଆଜ ଏ ଶୁଭ            ଶାରଦ ପ୍ରାତ
ଶ୍ୟାମଳ ତୃଣ            ଆଲୋକସ୍ନାତ,
ସମୀର ବହେ ମଧୁର ।
ଶେଫାଳି ବାସେ            ବିହଗ ଗୀତେ
ପାସୋରଗଲି            ଆଚମ୍ବିତେ
ଜଗତ ବ୍ୟଥା ବିଧୁର ।

ଚଉଦଗେ ଏ ଉନ୍ମାଦନା—
ମାନବ ମନେ କାହିଁ ବେଦନା ?
କ ଦୁଃଖ ଦୂର କରିବ ?
ଯେଉଁ ଦିଗେ ମୁଁ ଦେଖଇ ଚାହିଁ
ଶୋଭର ଲବେ ଅଭାବ ନାହିଁ,
କେଉଁ ଅଭାବ ହରିବ ?
ପ୍ରଳୟ କଥା ପ୍ରଳାପ ସମ
ଶୁଭୁଛି ଆଜ ଶ୍ରବଣେ ମମ
କ ହେବ କା'ର ବନାଶେ ?
ଏ ସୁଖ ଦନେ ଏ ଶୋଭାପୁରେ
ଧ୍ୱଂସଲୀଳା ରହୁ ଗୋ ଦୂରେ
ମିଥ୍ୟା ମୋହ ପିନା ସେ ! □□□

ଜାତୀୟକବ ବୀରକଶୋର ଦାସ

## ତମେ ଫେରଆସ*

ତମେ ଚାଲିଗଲ ତମ ବାଟରେ
ନାଆ ବାନ୍ଧଦେଇ ଅମ ଘାଟରେ ।
ଗଲ ଯିବାବେଳେ କହି ଏତକ
ହଡ ଭଲପାଉଥିବ ସାଥିକ ।
ଯେବେ ବଞ୍ଚାଇବ ଏହି ଖିଡକ
ତେବେ ମାନି ଚାଲ ସତ ନୀତକ ।
ଅରେ ଆଣିଥିଲ ଦେଶ ଜଡକ
ମନୁ ଭୁଲିଗଲ କଣ ଏତକ ?

* ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ରଚତ ।

ଜଗି ବସିଅଛ କାଳ ଭୁଜଙ୍ଗ
ଆସି ଚମକାଇ ଦଏ ବିଜୁଳି ।
ଖସେ ଆକାଶରୁ ବଷ ହାବେଳି
ପାଣି ଉଠେ ଦୁଇକୂଳ ଉଛୁଳି ।
ବାଟ ଭୁଲିଯାଇ ହେଲୁ ବାଉଳି
ଆମ ମନଟି ଗଲଣି ଝାଉଁଳି ।

ତମେ ଫେରିଆସ କେଉଁ ବାଟରେ
ନାଆ ମେଲିଦିଅ ଏଇ ଘାଟରେ ।

□□□

ବୈକୁଣ୍ଠନାଥ ପଟ୍ଟନାୟକ

## ପଥ-ସଙ୍ଗୀତ

ପୁରାତନ ଗୀତ କଣ୍ଠେ ମରଇ
ମରିବାର ଯାହା ମରୁ
ତରୁ ଶିରୁ ଖସେ ପଳିତ ପତ୍ର
ଝରିବାର ଯାହା ଝରୁ ।
କାନ୍ତ ହୃଦୟ ଶିଳା ତହୁଁ ଜଡ଼,
ଖର୍ବ ହୁଏରେ ଯେତେ ତୋର ବଡ଼ !
ମଉଳେ ଗୋଲାପ—ସ୍ୱପ୍ନ, ଶୁଖଇ
ପ୍ରୀତି-ବାରି ନୟନରୁ,
ମରିବାର ଯାହା ମରୁ ।
ତେବେ ତ ଶୁଭଇ ଜୀବନର ଡାକ
ଲକ୍ଷ ବଧିର କଥା
ଯାଗର୍ ଷ୍ଟଣୀକ ନୀରବତା ବଳି
ଗଭୀର ପ୍ରାଣର ବ୍ୟଥା !

ତୋଣ୍ଡରେ ଏକାଙ୍କି ଅନ୍ଧାରେ ଛନ୍ଦେ
କଙ୍କାଳ ଝୋଟି ଛବି,
ମରଣ ଗନ୍ଧ ସଙ୍କେତ କରେ
ଆସ ଆସ ଆଜରେ ଭଜ !
ଛୁଟର ଫାଟି ବକ୍ଷର ରୁଧିର
ଫେନଟି ଅଁଜଳ ବାଂଧୁଭର ଚିର
ଜଳଦ ଛେଦେଭରେ ଦୁର୍ବାଣ ଜାର୍ଣ୍ଣ
ଯାତ୍ରୀ କାହିଁକି ଡରୁ ?
ମରିବାର ଯାହା ମରୁ ।

□□□

କାଳିନ୍ଦୀଚରଣ ପାଣିଗ୍ରାହୀ

## ଆଗାମୀ

ବନ୍ଧୁ ଜରଜର, ଝଡ଼ର ବହିଛି ବାୟୁ
ମହଳା ଜଳି ଶମ ଛେଡ଼େ ମୋ ପରମାୟୁ
ଅସୀମ ସମୁଦ୍ରର କୋଳେ ଯେ ଭୁଏ ଲୀନ
ଅଗାଧ ଜଳଧି ତଳରେ ଯଥା ମୀନ !
ବର୍ଷା ସମ କେତେ ଆସଇ ଶୋକ ମାଡ଼ି
ପଲ୍ଲବେ ଅଙ୍କୁରେ ଅଘାତ ଯାଏ ମାରି
ଅସ୍ପଷ୍ଟ ଯାଏ ଦେହ ପାଦରୁ ଶେଷ ଚୂଳି
ଆଉ କା ନାହିଁ ଜଳେ ନ ପାରେ ଭୂଇଁ ମୁଣ୍ଡି !
ତଥାପି ଦୁନିଆକୁ ଦେଖୁଛି ହସ ହସି .
ଅଗାମୀକାଳର ମୁଁ କବିତା ରଚେଁ ବସି !
ଶତ ଶତ ହଜାରର ଲୋକର ପରି ମୃଦୁ
ବାସନା ଆସି କେତେ ମିଳାଇଯାଏ କୁହୁ !
ଶତ ଶତ ହଜାରର ଶେଫାଳି ଫୁଲପରି
ଦଳକ ପରେ ଦଳ ଯାଉଛି ପଡ଼ି ଝରି !

ଜୀବନେ ଯେଉଁ କଥା ହୋଇଲା ପୂର୍ବହ
ଛନ୍ଦରେ ଲୁହା ସମ ତାତିଲା ଟହଟହ
କି ଅଛି ପରିଣାମ କି ଅବା ତା'ର ଗତି
ବ୍ୟସନ ହେଲେ ହେବ କି ଭୁକ୍ତିପତ୍ତି ?
ଜାଳିବ ଦଗ୍ଧପ୍ରଭ ନଷ୍ଟର ରବି ଶଶୀ
ଆଗାମୀ କାଳର ମୁଁ କବିତା ରଚେଁ ବସି !

ଯୋଡ଼ିଏଁ-ଛନ୍ଦ ମୁଁ ବିପୁଳ ଜୀବନର
ଖେଳଇ ନାଟ ଯହିଁ ହର୍ଷ ବିଷାଦର
ସ୍ପନ୍ଦୁଛି ମରଣକୁ କରି ସେ ଉପହାସ
ବେଦନା ଶୋକ ତାପେ ପାଉଛି କରି ଦାସ !
ଛୁଟଇ ନାଚି ଯହିଁ ଊର୍ମି ହରଷର
ସ୍ପନ୍ଦୁଛି ନ ଗଣି ସେ କିଏ ବା ନିଜ ପର
ବିରାଟ ସେ ଜୀବନେ ସବୁରି ଅଛି ମୂଳ
ଚୁମ୍ବଇ କର ତହିଁ ପଦ୍ମରେ ନିଜ ଭୁଲ-
ପଦ୍ମରେ ପର ଦୁଃଖ ପାରଇ ଅନୁଭବି
ଆଗାମୀ କାଳର ମୁଁ କବିତା ରଚେଁ କବି !

ସୃଷ୍ଟିଣ ଅଛି ଯେତେ ନୂଆର ବିସ୍ମିତ
ଜଏ ସେ ବାଛୁ ଚର୍ଚ୍ଚୁ ନିଜର ଯାହା ହୃତ ।
ମିଳାଏ ଅନ୍ଧାର ତାହାରି ମହାଟଳେ
ଜ୍ୟୋତିଏ ସୂର୍ଯ୍ୟର ରଶ୍ମି ଆଣେ ସେ ସେ !
ମରଣ-ମୁଖୀ ଯେତେ ଶତ୍ରୁ ଚର ତା'ର
ଛଳନା ମିଛ ପାଇଁ ବନ୍ଦ କରେ ଦ୍ୱାର
ଦୁନିଆ ପରେ ଯେତେ ବଢ଼ୁଛି ଅକାରଣ
ତାହାରି ପରଶରେ କାଟଇ ସବୁ ପଣ
ତାହାରି ପରଶରେ ମୁକ୍ତ ହୁଏ ଧରା
ମୁଁ ସେହି ଜୀବନର କବିତା ରଚେଁ ପରା !

କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବସରେ ଖେଳେ ଘର,
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଖୋଜେ ଯେତେ ଯହିଁ ବାଳକ ବାଳିକା ତ

ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ଚଳେ
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେଁ ରଚି ।

ନାହିଁଟି ଅଧିକାର ମରିବା ଲାଗି ସହି
ଭିକ୍ଷା ଅନାହାରେ ତାଡ଼ନା ଖାଲି ସହି
ମରିବା ପାଇଁ ପୁଣି ଧନର ପାରିବାରେ
ନାହିଁଟି ଅଧିକାର କାହାରି ସେହିଠାରେ ।
ଗରିବ ଯେ ସମାଜେ ଜାଣେଇ ନାହିଁ ଖାଲି
ଧନିକ ନ କରଇ ଧନରେ ଡକାଇତି ।
ଧନର ବନମସ୍ତେ ନ ହୁଏ କଣା ସବୁ
କେବଳ ପଶୁ ସହିଁ ବୋଲାଏ ନାହିଁ ପ୍ରଭୁ,
କେବଳ ମୂର୍ଖର ଶକତି ନାହିଁ ଭୁଜେ,
ଆଗାମୀ ସମାଜର କବିତା ରଚେ ମୁଁ ଯେ !

କବିତା ରଚେ ପୁଣି ନୂତନ ଧର୍ମର
ପୁରୋଧା ହୁଏ ସହିଁ ବର୍ଣ୍ଣେ ଅପାମର
କାହାରି ସେ ଧରମେ ନାହିଁଟି ଚଳେ ଦାବି
ପଢ଼ିବ ମଥା କୋଡ଼ି ମରିବ ଭସ୍ମେ ଯିବ !
କହଇ ସେ ଧରମ ସହଜ କରି କଥା
ଆଲୋକ ବାୟୁ ସମ ଆଣଇ ସ୍ୱାଧୀନତା ।
ଛଳ ଅଟେ ଯାହା ରହିଛି ଯେ ବା ମିଛ
କେତେ ବା ସତ ତହିଁ କେତେ ବା ରୁଚ୍ଛା ମିଛ
ସକଳ ସତ ତହିଁ ଉଠଇ ମଥା ଟେକ
ସେହି ସେ ଧର୍ମର ଗାଥା ମୁଁ ବସେଁ ଲେଖି
ମିଛରେ ଗଢ଼ା ଯାହା ପଢ଼ିବ ଯେବେ ଭାଜି
ଆଗାମୀ ସେ କାଳର କବିତା ରଚେଁ ଆଜି ।

□□□

ମାୟାଧର ମାନସିଂହ

## ବିରହୀ ଘନ

କି ଖୋଜୁଛ ହେ ବାରିଦ ! କେଉଁ ରତ୍ନ ପାଇବାର ଆଶେ,
ଚିର ତବ ଅନ୍ୱେଷଣ ଏ ନଭସେ ଆକୁଳ ନିଃଶ୍ୱାସେ,
ଶ୍ରାନ୍ତପ୍ରାଣେ ଖୋଜି ବୁଲି ଆକାଶର ବିରାଟ ପ୍ରାନ୍ତରେ
କି ବ୍ୟଥା କି ରୁଦ୍ଧଦାହ ଅଛି ଘନ ତୁମର ଅନ୍ତରେ;
ଯୁଗଯୁଗାନ୍ତରୁ ଖୋଜି ଉପଶାନ୍ତି ପାଇନାହିଁ ତାର,
ବ୍ୟଥା ଅନିବାର ।

ବିରାଟ ଗମ୍ଭୀର ସଦା ବଦନର ଛବି ତବ ଘନ !
ନିରାଟ ବିଷାଦ-ରେଖା କପାଳରେ ହୋଇଛି ଲିଖନ ।
ଚନ୍ଦ୍ରର କାଳିମା ତୁଲ୍ୟ ଗଣ୍ଡେ ତବ ହୋଇଛି ଅଙ୍କିତ,
କେତେ ଯୁଗ ଦଗ୍ଧ-ସ୍ମୃତି ହୃଦେ ଯତ୍ନେ ହୋଇଛି ସଞ୍ଚିତ
ସେ ସ୍ମୃତିର କଶାଘାତେ ପ୍ରାଣ ଯେବେ ହୁଅଇ ବିକଳ
ସ୍ୱେଦ ଅବିରଳ ।

କିଏ ସେ ଲାବଣ୍ୟବତୀ ପୁଣ୍ୟବତୀ ଭାଗ୍ୟବତୀ ବାଳା;
ଯାହାପାଇଁ ହୃଦେ ଘନ, ଧରିଅଛ ଏ ବରଣ-ମାଳା,
ନୟନର ତପ୍ତ ଲୁହେ ଆର୍ଦ୍ର କରି ଆକାଶ ଅବନୀ
ଯୁଗ ଯୁଗୁ ବୁଲୁଥାଅ କି ବ୍ୟାକୁଳେ ସମସ୍ତ ଧରଣୀ,
ମନ୍ଦ୍ର ନାଦେ ଡାକୁଥାଅ, ଅନ୍ତରିକ୍ଷ ଯାଉଥାଏ ଭରି
କାହା ନାମ ଧରି ।

କେମନ୍ତେ ସେ ଅଭାଗିନୀ ହୃଦୟହୀନା କଠିନା-ପାଷାଣୀ,
କେଉଁଠାରେ ଅଛି ରହି ହୃଦଫଟା ଏ ଡାକ ନ ମାନି,
କେଉଁ ଆଶେ ଅଛି ସେ'ବା ପ୍ରାଣଭରା ଏ ପ୍ରେମ ତ୍ୟାଗି
ବକ୍ଷଭରା ଏ ସେନେହ ଫିଙ୍ଗି ଅବା ଦେଇଛି କି ଲାଗି;
ଏ ଡାକେ ସେ ନାରୀରକ୍ତ ଉଛୁଳିଲେ ଉଠେ ନାଚି ଫୁଟି
ବିରହରେ ଲୁଟି ।

ବର୍ଷେ ତୁମେ ବାଶବାଙ୍କ ପ୍ରଣୟୀର ଭାର ସାଲଟିବା,
ତେଣୁ କୁଞ୍ଜେ ତବ ଆଣେ ଫୁଟିଉଠେ କଶୋଗ୍ଧି ଯୂଥିକା,
ବନ୍ଧୁ ବୈଁାଲ୍ ନାଚିଉଠେ ତାଳେ ତାଳେ ବରଷା ବରଷା
ଯୁବକ ଯୁବତୀ ଗଣ୍ଡେ ବଚ୍ଛେଦର ଲୋତକ ଗଡ଼ଇ,
ବର୍ଷର ସକଳ ହୁଅାଁ କାଟି ହୁଏ ପୁଷ୍ପଶର-ଧାରେ
ତବ ଅଭିସାରେ ।

ତୁମପରି ବନ୍ଧୁ ଘନ, ଏ ଦୀନର ହଜିଛି ରତନ,
ପ୍ରଣୟର ତାରି ଗୋଟି ହୃଦାକାଶୁ ଲଭିଛି ପତନ,
ଜୀବନ ଲାଗୁଛି ଶୂନ୍ୟ, କ୍ଷୁଦ୍ର ପ୍ରାଣ ହାହାକାରମୟ
ପଲକେ ପଲକେ ଛିଣ୍ଡି ବେଦନାରେ ପଡ଼େ ମୋ ହୃଦୟ
ଆସ ସମ-ଦଶ-ବନ୍ଧୁ ମିଳାଇବା ଉଭୟେ ଲୋତକ
ଶାନ୍ତି ବପେଚକ ।

□□□

ଗୋଦାବରୀଶ ମହାପାତ୍ର

## ମଲାଟ

ପୁସ୍ତକ ଡାକି କହେ—ହେ ପାଠକ, ଗ୍ରାହକ ମୋର,
ଭିତର ଖୋଲ
ଲେଖନୀ ମୂନର କର କି ମୂଲ !
ପଇସା ଦେଲ !
ଶସ୍ତା ଆଜି ଏ ଛାପାଖାନା ତଳେ ବେପାର ଚାଲେ
ଦୋକାନ ତଳେ,
ଭାଷା ତୁଲେ ନାହିଁ ଛନ୍ଦ ମିଳେ,
ଭାବନା ଭୁଲେ !!
ସଭ୍ୟତା ଆଜି ମଲାଟ ଉପରେ ଚାଲିଛି ଖାଲି
ଯାଉଚ ଭୁଲି,

ରଙ୍ଗୀନ୍ ଛବି କାଗଜ ମେଲି
ଦେଖୁଛ ବୋଲି ?
ଭୂଷଣପ୍ରଧାନ ବେଶ ପରିଧାନ ସନ୍ଥଜନ
ଯାହାରେ ମଣି
ଭିତରୁ କି ତାର୍ ବଚନ ଶୁଣି
ଉଖାରି ଗୁଣି ?
ପରିଧାନ ତଳ ସ୍ୱୈର ତସ୍କର ବିଷମ ଅଢି
ଓଲଟା ସିଢି
ବାହାର ଦିବସ ଭିତର ରାତି
ନକଲି ଯଢି !
ସଭ୍ୟତା ଆଜି ସ୍ୱଳଚ ଦେଶରେ
ପକାଇ ବାଜି,
ନୀତି, ସମ୍ମାନ ଯାଉଛି ଭାଜି
କାଲିକି ଆଜି
ସ୍ୱାଦ ଗନ୍ଧର ନକଲି ବେପାର ଏଇଠି ଚଳେ
ମଲାଟ ତଳେ
ଦେଖିପାରୁଥିବ ଏ ଉତ୍କଳେ
ବାହାରେ ଘରେ ।
ତେଲରେ ଅଗସ୍ତି ପଡ଼ିଲେ ବି ଧସ୍ତି
ଯାଉଛି ମିଳି
ଚଳନରେ ବାଲି,
ଘ୍ରେଣ ଦୁର୍ଗନ୍ଧ କି କୋଳାକୋଳି
ଲେଭକ ଡାଲି !!
ମହାକାଳଫଳ ବାହାର ରୁଚିର
ଭିତର ତାର
କି ନାରଖାର,
ମଲାଟ ଉପରେ ଚାଲିଛି ଖେଳ
ଏ କାରବାର ।

□□□

ସଚ୍ଚିଦାନନ୍ଦ ରାଉତରାୟ

# କବି ପ୍ରତି

ଆହେ କବି ! ବାରେ ହୁଅ ଠିଆ
ନେଇଯାଅ ତାର ମାଳା
ନୁହେଁ ଫୁଲ, ସେ ଯେ ଦୀପ୍ତ ନିଆଁ ।
ପ୍ରାଣର ଗୋପନ ଲିପି
ମରମର ଆଦିମ ବେଦନା
ତହିଁ ମଧ୍ୟେ ଲଭେ ରୂପ
ଲଭେ ଭାଷା କରୁଣ, ମୋହନ !
ସୃଷ୍ଟିର ଗୋପନ ଉତ୍ସ
ଜଳିବାର ଅନିବାର କ୍ଷୁଧା
ଦୀପଦାନି ସମ ଜଳି
ଢାଳିବାର ଶୁଭ୍ର ଜ୍ୟୋତି ସୁଧା;
ପରିକାଶ ଲଭିଅଛି ତହିଁ,
ଜୀବନର ମହୋତ୍ସବେ ମରଣର
ସ୍ୱପ୍ନ ରହି ରହି···
ଆପଣାରେ କରୁଛି ଘୋଷଣା,
ମରଣର ସତ୍ୟ-କବି ଦେଇଯାଏ
ଆଜି ତା' ସୂଚନା ।।
କମଳବିଳାସୀ କବି ! ଦେଖିଯାଅ
ନୁହେ ଏ ଛଳନା,
ନୁହେ ଏହା ନିଶାନ୍ତର
ସ୍ୱପ୍ନନିଶା ଗତାନୁ କଳ୍ପନା !
ସପନର ସ୍ୱାତୀ ତାରା ସମ ଏହା
ଲିଭିବନି ବାରେ
ତମିର ସାଗର ତଳେ
ରଜନୀର ଶାଣିତ ଅନ୍ଧାରେ

ଜଳିବାର ଏ ମହାତପସ୍ୟା,
ନିଜେ ସେ ଜଳିଛି ଜାଳି କୋଟି ବୁକେ
ଜ୍ୱଳନ ପିପାସା !!

× × × ×

ପୋଛ କବି ପୋଛ ଅଶ୍ରୁନୀର
କ୍ରୌଂଚ ମିଥୁନର ଶୋକେ ଅଭିଭୂତ ତବ ନେତ୍ର-ନୀର ।
ମଣିଷର ଦେଖି ଏ ସାଧନା
ବୁଣିଦେଉ ଅଗ୍ନିକଣା, ବଜ୍ରଗର୍ଭ
ଝଡ଼ର ସୂଚନା
ଲଭିଯାଉ ଲୋତକର ନଦୀ,
ଆସନ୍ନ ଝଡ଼ର ବାଣୀ ପ୍ରତି କଂଠେ
ଝରୁ ନିରବଧି ।।
ବହୁ ଦିନ ତଳେ
କିରାତର ଶରବିଦ୍ଧ ବନପକ୍ଷୀ କରୁଣ ଦୁଃଖରେ
କାନ୍ଦିଥିଲ ବାରେ,
କାଂଦିଥିଲେ ତୁମ ସାଥେ ବନଲତା,
ତରୁଦଳ ମାଳେ ।
ଆଜି ଏଥି ମଣିଷର ଶିଶୁ
ପଡ଼ିଛି ଭୂଇଁରେ ଲୋଟି ଅସହାୟେ ମରଣର ବସ୍ତୁ ।
ଶର କି ହେ ଗଲା ସରି
କବି ତବ ନୟନ ତୂଣୀରୁ ?
ବ୍ୟଥାର କରୁଣ ଲିପି
ହରାଇଲା ଆଜି କି ବାଣୀରୁ ?
କାଂଦ କବି ଶେଷ ଥର ପାଇଁ
ଗଗନ ପବନ ଯାଉ ସେଇ ମ୍ଳାନ
ବ୍ୟଥାରେ ମିଳାଇ
ବନେ ବନେ ଉଠୁ ହାହାକାର,
ଧରଣୀରେ ହେଉ ବନ୍ୟା
ମାଡ଼ିଆସୁ ଅଶ୍ରୁ ପାରାବାର,
ତଳେ ମାଟି, ଉପରେ ଆକାଶ
ଭରିଦେଉ ଅଶ୍ରୁଜଳ ତହିଁ ମଧ୍ୟେ ଯେତେ ଅବକାଶ ।।

ସେ'ମହାପାବନ
ସ୍ୱପନଖଚିତ ତବ ଅଲକାର
ପ୍ରବାଳ-ତୋରଣ
ଦେଉ ଧ୍ୱଂସକରି
ଫଗେ ତାର 'ଭଜିଯାଉ ମରି
ତୁମରି କଳ୍ପନାଜାତ ଗଜଦନ୍ତ ରଚିତ ମିନାର,
ମୃତ୍ତିକାରେ ବ୍ୟଙ୍ଗକରି ବୃଣେ ଯାହା
ଘନ ଇଂଦ୍ରଜାଲ ।।

× × ×

ମହମରି ସ୍ତମ୍ଭ
ଜଳିଯାଏ ହୁରୁ ହୁରୁ
ନୁହେ ଶେଷ, ଶେଷର ଆରଂଭ !!
ଆରେ ଆରେ ପଳାୟନପଂଥୀ !
ପଳାଇବୁ କାହିଁ ଆଜ ଛିନ୍ନକରି ଧରଣୀର ଗ୍ରଂଥୀ ?
ଲୁଚିବୁ ବା କାହିଁ
ମୃତ୍ତିକାର ଏତେ ଦାବୀ
ପାରିବୁ କି ଆଜ ତୁ କଟାଇ ?
କାହିଁ ଖୋଜୁ ନେବୁରେ ଆଶ୍ରୟ
ତୋର ସେଇ କୁଂଜବନ ଦେଇ କି ସେ ପାରିବ ଅଭୟ ?
ଏ ଘୂର୍ଣ୍ଣିର ସର୍ବଗ୍ରାସୀ କାୟା
ତାରେ କି ଧରିବ ନାହିଁ ପ୍ରସାରି ତା
ପ୍ରେତାୟିତ ଛାୟା ?

× × × ×

ପଥଭ୍ରାନ୍ତ କବି
ଏତେ ଦିନ ସପନରେ ଲେଖିଅଛ ମାୟାମୃଗ ଛବି ।
ଏତେ ଦିନ ଗାଇଅଛ ତୁମେ
ଦ୍ରାକ୍ଷାର ଶୀକର ସ୍ତନ ପୂର୍ବବାୟୁ କେଉଁପରି ଚୁମେ ।
ଦେଖିନ ଅନୂଢ଼ା ଦେହେ
ସହି ସହି ଭୋକ, ଅନଶନ,
ମଉଳାଇ ତନୁଶିଖା, ଫୁଟିନାହିଁ କପରି ଯୌବନ
ମା'ଆର ଲୁଲିତ ସ୍ତନେ, ଶୁଷ୍କ ଚର୍ମେ
ଶିଶୁ କେତେବାର

ଶୋଷୀ, ପାଇନାହିଁ କ୍ଷୀର,
ଝରିଅଛି ଲହୁ ଧାର ଧାର
ବନ୍ଧ୍ୟା ଦେଶେ ସନ୍ଧ୍ୟା ବାୟୁ
କାନ୍ଦୁଅଛି ଖାଲି ଆର୍ତ୍ତନାଦେ
ନପୁଂସକ ଭବିଷ୍ୟତ ବର୍ତ୍ତମାନ ପଙ୍ଗୁ ଅବସାଦେ ।
କେହି ଯଦି କରେ ପ୍ରତିବାଦ,
ମୃତ କଂଠେ ଦିଏ ଯଦି କେହି ଥରେ ଜୀବନର ସ୍ୱାଦ
ଦେଖିଛ କି ତେବେ ତାହାଲାଗି
କାରାର ଶୃଂଖଳ ପୁଣି ଘାତକର ଖଡ଼୍ଗ ଉଠେ ଜାଗି
ଏଥି କେଉଁପରି ?
ଝରା ବକୁଳର କବି ! କି ଦେଖିବ କହ କହ ସୁର,
ଦେଖିନ ତ କିଛି,
ପଦ୍ମଶ୍ରେଣୀ ଦେଶେ ତବ ଏ ସବାଦ,
କେବେ ପହଂଚିଛି ?
ଖାଲି ତମ ଅଭିଜାତ ମନ
ଆଜଯାକେ ଦେଖିଅଛି ଅସ୍ଥିହୀନ ମର୍ମର-ସ୍ୱପନ ।
ଅଂଗୁର କୋରକ ପରି ଲଜାସ୍ମିତ ଉର୍ବଶୀର ତନୁ
ଗଢ଼ିଚ ନିଗାଡ଼ି ତୁମେ
ସପନର ଶତ ଇଂଦ୍ରଧନୁ ।
ତେଣୁ କେବେ ମଣିଷର ପାଇଁ
ଟୋପା ଏ ଲୋତକ କେବେ ଚକ୍ଷୁଟାରୁ
ତାର ଝରି ନାହିଁ ॥

× × × ×

ଯେଉଁଠି ମରଇ ଶିଶୁ,
ଜନନୀର ଆର୍ଦ୍ର ବୁକେ ଶୋଇ,
ଫୁଲର ଫସଲ ଯାଏ
ବୈଶାଖର କାଳଝଡ଼ ଧୋଇ,
ତୁମର ନଂଦନ କଳା,
ତୁମର ଏ ମାଧବୀ କଳ୍ପନା
କିପରି ମଣିଷ ସତେ
କହ କବି କରିବ ଅର୍ଚ୍ଚନା ?
ସେ ଯେ ନିଃସ୍ୱ, ସେ ଯେ ହତଭାଗା,

ଅଛୁ ଖାଲି କ୍ଷୁଧା, ତୃଷା, ଆଉ ଅଛୁ ଏତେ ଟିକେ ଜାଗା—
ଧରିବୁକେ, ମରିବାର ପାଇଁ,
ଚରଣେ ଶୃଂଖଳ ଅଛୁ
ଏହା ଛଡ଼ା ଆଉ କିଛୁ ନାହିଁ ।
ସେ ଯେ ସର୍ବହରା ।
ହରାଇଚି ସବୁ କିଛୁ, ବାକୀ ଅଛୁ ଶୃଂଖଳ ଓ କାରା !!
ଆଜି ମ୍ଲାନ ଆଖିରେ ତାହାର
ଚୈତ୍ରର ସୁରଭି ରାତି
ହରାଇଚି ସବୁ ମାନେ ତାର—
ସବୁ ସାର୍ଥକତା,
ତେଣୁ ତାକୁ କ୍ଷମ କରି ବୁଝେନା ସେ
ବୋଲି ତୁମ କଥା ॥

× × ×

ଧ୍ୱଂସ କରି ସବୁ ଅତ୍ୟାଚାର
କେ ଦେବ ତା' ବୁକେ ଆଶା
ମନେ ଦେବ ଦୁରଂତ ଜ୍ୱାର ?
ଧ୍ୟାନରେ କେ ଆଣିବ ସ୍ଥିରତା
ଜୀବିକାର ଯଂତ୍ର ବୁକେ ଜୀବନର ସଦ୍ୟ ପ୍ରଖରତା ?
ପଶ୍ଚିରଇ ସକାଳ ଆଲୋକ
ଜାଗ ଜାଗ ବୃହନ୍ନଳା ! ଗଲଯାଉ
ପଲିତ ନର୍ମୋକ ॥
ମନୀଷିର ଯୁଗ ଆଣ କବି
'ନାରକ୍ତ କାର୍ତ୍ତିକ' ପ୍ରାନ୍ତେ ସୃଜନର ଆରକ୍ତ କରବୀ
ଫୁଟିବ ଗୋ ତେବେ
ଚିର ବସଂତର ସ୍ତବ ବନେ ବନେ
ଝଂକାରିବ ଯେବେ ॥
କରି କବି ତେଣୁ ତୀର୍ଥସ୍ନାନ
ଏ ଶିଖାର ପୁଣ୍ୟ ତେଜେ
ହଉ ସବୁ କ୍ଲାଂତିର ନିର୍ବାଣ ॥

□□□

ଅନନ୍ତ ପଟ୍ଟନାୟକ

## ସ୍ୱପ୍ନ ଦେଖୁଛି

ସେଇ ଜାତିରେ ମୁଁ ଜନ୍ମ ଲଭିଛି ସତ୍ୟ,
ଯେ ଜାତି ଜୀବନୁ ପାସୋର ଯାଇଛି ହସ,
ନୟନେ ଯାହାର ଅସରା ଅଶ୍ରୁ ଭରା,
ହୃଦୟ-ଶିଳାରେ ନିଗୁଡ଼େ ଥରୁଛି ହସ ।

କେମନେ କହୁଛ ସ୍ୱପ୍ନ କରିବ ପେଶା
ସ୍ୱପ୍ନ କାହାଣୀ ଶୂନ୍ୟେ ଝୁଲୁଛି କାହିଁ ?
ମୃତ୍ୟୁ ନୀଳିମା ଭଗ୍ନ ଦେହେ ମୋ ନେସା,
ଅନ୍ନମୁଠିର ପଛେ ମାପେ ଯା ହାଇ ।

ମୋ ସମ ତେବେ ରେ ସ୍ୱପ୍ନ ଦେଖୁଛି କିଏ ?
ଗାଉଛି କିଏ ରେ ପ୍ରଳୟେ ପ୍ରଣୟ-ଗୀତ ?
ଅଳସ ବିଳାସେ ଶୋଇ ଯେ ସ୍ୱପନ ଲହେ
ନରକ ତାର କି ରଚଇ ସରଗ ସୀତ ?

କୁଟୀର ଦୁଆରେ ଫୁଟେ ରେ ମୋହର ଫୁଲ,
ସହରତଳିରେ ଶୋହେରେ ମୋହର ଆଶା,
ବିପଣୀ ବୀଥିରେ ବଣିକ କରେ କି ମୂଲ ?
ଶିଶୁର ଦରେଟି କୁହାଟି ଉଠେ ମୋ ଭାଷା ।

କମାରଶାଳରେ ଅନଳ ଦୋଳରେ ନିତି
ସ୍ୱପନ ମୋହର କୁସୁମ ପରଶ ଆଣେ,
ଗହଳ ବିଲରେ ପସିଣେଉଛୁଳା ପ୍ରୀତି
ଭିଜାଏ ଜୀବନ ମଧୁର ଆଲୁଅ ସିଣେ ।

ସ୍ୱପ୍ନ ଦେଖୁଛି—ସହର ପଲ୍ଲୀ କୋଳେ
ଚଳିଲି ମଣିଷ ମୃତ୍ୟୁବିଜୟୀ ସର,
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ
ତରୁଣ ଅୟନେ ହାସ୍ୟ-ପଢ଼ୁଛି ସ୍ୱର ।

ସ୍ୱପନ ଦେଖୁଚ—ହିଂସା ପରଶ ନାହିଁ,
ଜାଣେ ନା ଜାତ ମୋ ମାଲିକ ମୂଲିଆ କଥା,
ଦସ୍ୟୁ ବଣିକ ରାଜନ୍ୟ ଯାଇଚ ନାହିଁ
ସମାନ ସକଳେ, ଉଚ୍ଚ ମଣିଷ ମଥା ।

କହିଲା କିଏ ସେ ବଜିଲା ନୀଳାର ତଳେ
ବିଶ୍ୱ ଭୁବନେ ଅଜଣା ଆଲୋକ ବାଣୀ,
ଝଲିଲା କିଏ ସେ ସାଧନା ସିଦ୍ଧି ବଳେ
ପ୍ରଣବ-ରାଗିଣୀ, ପୁଲକ ପରାଣେ ମାନି ।

ସଉଧେ ସଉଧେ ବାଜିଲା ମୁରଜ ବେଣୁ,
ବଉଦ ମହଲେ ନାଚିଲା ତାହାର ସୁର,
ସମୀରେ ସମୀରେ ଉଜ୍ଜ୍ୱଳ ଆଶାର ରେଣୁ,
ନିତ୍ୟ ନୂତନେ ପୂରିଲା ଜୀବନପୁର ।

ଏ ମର ମଣିଷ ଅମର ହେଲା କି ଧୀରେ
ଆପଣା ହାତରେ ଆପଣା ଜୀବନ ରଚି,
ମୈତ୍ରୀ ମୁକୁଟ ଝଲସେ ସକଳ ଶିରେ
ବାହୁରେ ପ୍ରଣୟ ବଳୟ ଦେଇଛୁ ଖଚି ।

ସ୍ୱପନ ଦେଖୁଚ—ମୋ ତହୁଁ ସ୍ୱପନ କିଏ
ଉପାସ ଭୋକରେ ଦେଖୁଚ କହ ତ ଭଲା ?
ଗରଳ ଉଗାର ସେ ଜନ ପରାଣ ନିଏ
ସ୍ୱପନ ଦେଖେ କି ଜଳାଇ ଜୀବନଖୋଲା !

□□□

ରାଧାମୋହନ ଗଡ଼ନାୟକ

## ଅୟି ପୃଥ୍ୱୀ !

ଅୟି ପୃଥ୍ୱୀ, ଆଉ ଥରେ କାମଧେନୁ ହୁଅ ଆଜ ତୁମେ,
ତୃଭୁକ୍ଷାର ଦହନେ କି ହରାଇବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାସ୍ୱିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜ ତୁମେ ।
ଶସ୍ୟହୀନ ହେଲା କ୍ଷେତ୍ର, ପର୍ଣ୍ଣହୀନ ହେଲା ମହୀରୁହ,
ଅନ୍ନହୀନ ହେଲା ଯେବେ ଗୃହ
ଆକୁଳ ପ୍ରକୃତି-ବର୍ଗ ଦେଖି ଅତି ଦୁରନ୍ତ ଦୁର୍ଭିକ୍ଷ
ଆର୍ତ୍ତ କଳ-କୋଳାହଳେ ଭରଦେଲେ
ପଥ ଘାଟ ପାଣ୍ଡୁ ଅନ୍ତରୀକ୍ଷ ।
ଅୟି ପୃଥ୍ୱୀ,
ତୁମେ ତେବେ ଠିଆହେଲ ଧରି ଏକ କାମଧେନୁ ମୂର୍ତ୍ତି,
ଶୁଣାଇଲ ସ୍ନେହସିକ୍ତ ଆଶ୍ୱାସ ବଚନ,
'ହେ ରାଜନ,
କର ମୋତେ କର ହେ ଦୋହନ ।'
ମନୁ ହେଲେ ବତ୍ସତତ୍ତ୍ୱ, ଦୋଗ୍‌ଧା ହେଲେ ପୃଥୁ,
ସ୍ରବିଲା ଦୁଗ୍‌ଧର ଧାର
ଶସ୍ୟର ସମ୍ଭାର
କମ୍ର ଶିଖା ଯେସନ ପୁଣି ଉଦ୍ଭାସିଲା ବିବର୍ଣ୍ଣ ସଂସାର ।
ମୁଞ୍ଜରି ଉଠିଲା ପୁଣି ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟର ଋତୁ,
ଘରେ ଘରେ ଦ୍ୱାରେ ଦ୍ୱାରେ ଉଠିଲା ଉଚ୍ଛୁଳି
ଘୃତ ଅନ୍ନ ଦଧି ଦୁଗ୍‌ଧ ପାନ
ସନ୍ତୋଷର, ତୃପ୍ତିର ମାଧୁରୀ ।

ସେ କେଉଁ ଯୁଗର କଥା
ଏ ଯୁଗ ତ ସମ୍ପୂର୍ଣ୍ଣ ପୃଥକ;
ଏକକର ସ୍ୱାତନ୍ତ୍ର୍ୟ ନାହିଁ,
ପଥେ ପଥେ ବାଜୁଅଛି ଜୟ ଜୟ ଶଙ୍ଖ
ପ୍ରବୃଦ୍ଧର ଗ୍ରୀବପରେ ବିଜ୍ଞାନର ଉଗ୍ର ଅଭିମାନ
ବିଜୟର ଧ୍ୱଜା ତୋଳି ମେଲିଅଛି
ମତ୍ତ ଅଭିଯାନ ।
ମନୁର ସନ୍ତାନ ଏଇ ଆଜର ଦାୟାଦ,
ଯୁକ୍ତକରେ ମାଗୁନାହିଁ ସ୍ୱର୍ଗ ଆଶୀର୍ବାଦ,
ମାଗୁନାହିଁ ଚନ୍ଦ୍ର ଜ୍ୟୋତ୍ସ୍ନା,
ମାଗୁନାହିଁ ଇନ୍ଦ୍ର-ମେଘ-ବାରି,
ମୁକ୍ତ ସମୀରଣ ପଦେ
ଆବେଦନ ଦେଉନାହିଁ ଡାଳି ।
ଜୟଯାତ୍ରା କରୁଛି ସେ ଦୂର ଚନ୍ଦବାଲେ
ସ୍ପୁଟନିକ୍ ପଠାଉଛି ଦିଗ୍‌ବିଦିକ୍
ଦୂର ଅନ୍ତରାଳେ
ନୂଆ ଉପନିବେଶର ଆବିଷ୍କାର ଆଶେ,
ଅନନ୍ତ ଉଲ୍ଲାସେ ।
ବିଦ୍ୟୁତ୍-ଆଲୋକ-ଶିଖା ଜାଳୁଛି ବହୁତ
ତଥାପି କାହିଁକି ପୁଣି
ଅନ୍ଧକାର ଏତେ ଘନୀଭୂତ ?
ଦିଗେ ଦିଗେ ପଠାଉଛି ଶାନ୍ତିର କପୋତ,
ଉଦ୍‌ବେଳି ଉଠୁଛି କାହିଁ
ପଥେ ପଥେ ଅଶାନ୍ତିର ଖର ଅଗ୍ନିସ୍ରୋତ !
କାହିଁକି ବଢ଼ୁଛି ତେବେ
ଅନ୍ତରର ଦୈନ୍ୟର ବିପାକ ?
ଘରେ ଘରେ ପ୍ରାଣେ ପ୍ରାଣେ
ଉଠୁଅଛି ହା' ଅନ୍ନର ଡାକ
ସୁବିପୁଳ ବିଜୟର ଦୃପ୍ତ ଉନ୍ମାଦନା
ମର୍ମେ ମର୍ମେ ତୋଳୁଅଛି କରୁଣ ବେଦନା ।

ଅୟି ପୃଥ୍ୱୀ, ଅଭ୍ର ଥରେ କାମଧେନୁ ହୁଅ ଆଜ ତୁମେ,
ବୁଭୁକ୍ଷାର ଦହନେ କ ହରାଇବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାଞ୍ଚିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜ ତୁମେ ।

□□□

ଡକ୍ଟର କୁଞ୍ଜବିହାରୀ ଦାଶ

## ଯନ୍ତ୍ରନଗର

ନୁହେଁ ଏ ତ କୋଣାର୍କ ବା ତାଜ୍
ନୁହେଁ ଏ ତ କୃଷକ କୁଟୀର
ନୁହେଁ ଏ ତ କ୍ଲାନ୍ତ ପରିଜନ ବସୁଧା ମାଟିର;
ନୁହେଁ ଏ ତ ଅତୀତ ଗୌରବ
ଆଗାମୀ ସପନ
ବର୍ବର ଯୁଗର ଏକ କୁତ୍ସିତ କାହାଣୀ
ଜମାଟ ସହସ୍ର ଅଶ୍ରୁକଣା
ଛୁଡ଼ା ଏଥି ହୋଇଛୁ କମ୍ପାଇଁ ?
ଛମତାର ଶେଷ ଅସ୍ତ୍ରାଗ ନଡ଼ାଇଦେବାକୁ କେହ୍ନ ନାହିଁ ?
ଅନ୍ଧକାର ଯୁଗର ନିଶାଣ ଉଡ଼ାଇଦେବାକୁ ନାହିଁ ବଳ ?
ଶୁଣିଛୁ ତ ଏଇ ପଥେ ଧାଇଁଥିଲ ଝଡ଼
ଗାଇ ଅଗ୍ନିଗାନ
ନରମୁଣ୍ଡମାଳା ମିଛ ଛୁଡ଼ା କର୍ମୀ ଏଇ କାପାଳିକ
ଅଧିକ ଦେବାକୁ ଅପମାନ
ଜାଗ୍ରତ ଏ ଶତାବ୍ଦୀରେ ?
ଭାଙ୍ଗି ନାହିଁ ପେଷିତର ଉତ୍ତପ୍ତ ନିଃଶ୍ୱାସେ
ଭାସି ଏ ଯାଇନ୍ ଆଖି ନୀରେ ?

କଙ୍କାଳକୁ କଙ୍କରେ ମିଶାଇ
ପଙ୍କ କରି ଲିପିଛୁ ପ୍ରାସାଦେ
ସ୍ୱେଦକୁ କରିଛୁ ଅଶ୍ରୁ
ଅଶ୍ରୁକୁ କରିଛୁ ରକ୍ତଧାର
ସୁଖ ଶାନ୍ତି ମଣ୍ଡପରେ ଗଦାଇଦେଇଛୁ ହାହାକାର ।
ଅନ୍ଧଗଳ ଅନ୍ଧକାରେ ଢାଳିଛୁ ଆଶିଷ
ଅଶ୍ରୁ ଆଉ ସ୍ୱେଦ ।
ଯନ୍ତ୍ରଣାରେ କରିବା ଚିତ୍କାର
ନାହିଁ ଅଧିକାର ।

ହସିଛୁ ଯେ ସହସ୍ର ଇଙ୍ଗିତ, ସୃଜିଛୁ ଉତ୍ପାତ
ରେ ତୋଫାନ, ପାଷାଣେ ପାଷାଣେ
ଦେଖ ହସେ ସେ ଇସ୍ପାତ ହାତ ।
ଜଳିଉଠେ ସେଇ ରକ୍ତ ଆଖି କଳାର ମହଲେ
ବନ୍ଧୁକର ଗୁଳି ଦମ ସେ ବୁକୁ ସ୍ପନ୍ଦନ
ଭୁଲେ ଏ ଜଙ୍ଗଲେ ।

ଶୁଣ ତାର ଗର୍ଜିଉଠେ ଏବେ ନିକାଞ୍ଚନେ—
ରହ, ରହ ପାଜି
"ବେଠି ନ ଦେବାର ମଜା ଛଡ଼ାଇଦେଉଛୁ ମୁହିଁ ଆଜି ।
"କେ ଅଛରେ ଆଙ୍ଗୁଳି ସନ୍ଧରେ ମାରିଯାଅ କଣ୍ଟା
"ଶୁଣି ଏ ଲାଠିର ଡାକ ଦେଇନାହିଁ ଭେଟି
"ବୁଟମାଡ଼େ ଭାଙ୍ଗିଦିଅ ଅଣ୍ଟା ।"
"ଛୁମୁଙ୍କ ସାମନାରେ ଇଏ ଗଲା ଛତା ଟାଣି
"ଗୋଟି ଗୋଟି ଉପାଡ଼ ତା ଦାନ୍ତ,"
"ଛୁମୁଙ୍କ ବିରୁଦ୍ଧେ ଇଏ ହେଉଥିଲା କଥା
"ମଡ଼ାଇଦିଅରେ ତାକୁ ଗାଡ଼ି ।"
"ଖଜଣା ଦେବାକୁ ଏଇ କରୁଥିଲା ମନା
"ପଟେଡ଼ାଶୀକ ତାର
"ବାଘ ଆଗେ ଫିଙ୍ଗିଦିଅ
"ନତୁବା କାନ୍ଧରେ ରଖି ଦିଅ ପଲସ୍ତରା ।"

"ମାଗଣ ଦେଉନ ଇଏ "
"ଲଗାଅ ଗୋଇଠା ବଧା, ବଜାଅ ନାଗରା।"

ପିଶାଚର ସହସ୍ର ଆଦେଶ
ମୂର୍ତ୍ତିମାନ ଯନ୍ତ୍ରନଗର
ପ୍ରଳୟ କମାଣ ସମ ବକ୍ଷେ ଲକ୍ଷ୍ୟ ରଖିଛ ତୋହର
ମନ୍ତ୍ର ହାତ ସମ ନର୍ବିକାରେ
ମନ୍ଥି ଏ ଦେଇଛ ଲକ୍ଷ ଭ୍ରୂଣ
ଏ ଏକ କଙ୍କାଳସ୍ତୂପ
ଗଢାଇଦେଇଛ ଝଡ଼ବାତ।
ଏ ଏକ ଆଗ୍ନେୟଗିରି ତୋଳିଅଛ ଶିର
ଏ ଏକ ପାଷାଣ ହାତ
ମଣିଷ ଧମନୀ ଶିରା ଶୂନ୍ୟ କରି
ଦୁହିଁଛ ରୁଧିର।

ଇଏ ଏକ ଯାଦୁଘର
ତୋଳିଅଛ ଭୂକମ୍ପର ନାଚ
ଯମପୁରେ ଯିବାଲାଗି ଯମଦୂତ ଗଢ଼ିଛ ପାହାଚ।
ରଣଭୂମି ବନାଶ ଲୀଳାରେ
ନାଚ ନାଚ ସ୍ତବ୍ଧ ଏବେ ହୋଇଚ କବନ୍ଧ
ବାନ୍ଧିବାକୁ ସ୍ୱାଧୀନ ପ୍ରବାହ
ଆଲୋକର ଶତ୍ରୁ ଜଣେ ପାଢ଼ିଅଛ ଛନ୍ଦ।

ମରିବା ଆଗରୁ ନିଜେ ନିଜର ସମାଧି
ଯାଇଅଛ ଗଢ଼ି
ଲକ୍ଷ ପ୍ରାଣ ଜାଳି ଜାଳି
ନିଜେ ସେ ଯାଇଛ ଶେଷେ ପୋଡ଼ି।

ଦୁନିଆକୁ ଦେଇଛ ସେ ମୁଠିଏ ପାଉଁଶ
ଏଇ ତାର ଦାନ
ତାହା ପରେ ଭସ୍ମହୋଇ ନିକ୍ଷେପିତ ଆରେ
ଗାଅ ଏ ଯୁଗର ଜୟଗାନ।

ଗତ ଶତାବ୍ଦୀର ଅଭିଶାପ
ଏବେ ଯେଉଁ ଚୁମ୍ବଇ ଆକାଶ
ଶତ ଶତ ଯନ୍ତନଗର
ଚଉଦିଗେ ଗର୍ବେ ଟେକିଲେ ମଥା
ଲକ୍ଷକୋଟି ଫିଙ୍ଗି ଦେଇ ପାତାଳ ଗହ୍ୱରେ'
କହ କେବେହେ କଙ୍କାଳ ହେବ ତା ବିନାଶ ?

□□□

ମନମୋହନ ମିଶ୍ର

## ନମସ୍କାର କର

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବସ୍ତ୍ରରକ
ମୋର ଏ କବିତା
ସଂସାରରେ କବି ବୋଲି, ବୋଲନ୍ତି ଯାହାକୁ
ସେ କବି ମୁଁ ନୁହେଁ
ମୋହର କଳ୍ପନା ସୀତା
ଜନ୍ମିଥିଲା ଏ ମାଟିର କଠୋର ଜଠରୁ
ଦୁରନ୍ତ ଜୀବନ-ପଥେ ଘନ ବନାନ୍ତରେ
ରକ୍ଷପୁଷ୍ଟ ଭୀମ କୋଳାହଳେ
ଜଟାଧାରୀ ବନବାସୀ ସନ୍ନ୍ୟାସୀର ପାଣି
ବରିଥିଲା ଆପେ ଜାଣି ଜାଣି ।
ସତ୍ୟ ଆଉ ପ୍ରେମ ଲାଗି ବାର ବାର
ଘେନିଥିଲି ଅନଳ ଶପଥ,
ଆଜଠାରୁ ବର୍ଷ ଏକଶତ,
ଯେଉଁଦିନ ନଥିଲା ନେତା, ନଥିଲା ଗ୍ଲାଉଣୀ
ସେଉଁଦିନ ମୁଁ ତା'ରେ ଜନ୍ମ ଦେଲି
ଶତ ଶତ ମାତାର କ୍ରନ୍ଦନେ,
ହିମାଳୟ ଶିଖରେ ବଦାଶ ତାରେ ବୁହାଇଲି ।

ଲକ୍ଷ୍ମୀବାଈଁ ଅସିର ଝଲସେ
ଗଢ଼ିଥିଲ ତାହାର ଲପନ
ସଜଫୁଟା କେତେ ମୀଲକ
ହୃଦୟର ଉଦ୍ଧସ୍ୱ ଚର
ଗଢ଼ିଥିଲୁ ତାର କଟିବାସ,
ଅଯୁତ କୃଷିବଳର ପେଶୀଲ ଧମନୀ
ଗୁନ୍ଥି ଥିଲ ବେଣୀ—
ଗଢ଼ିଥିଲ ବନ୍ଧନ ଦଉଡ଼ି
ସେ ଦଉଡ଼ି କଲି ମସୃଣ
ପ୍ରଥମ ପ୍ରେମିକା ମୁଖ ମଧୁର ସିଞ୍ଚନେ ।

ଆଜ ମୋତେ ଶୁଝିବାକୁ ହେବ
ଯାହାଠାରୁ ଯାହା ନେଇଥିଲି ।
ଶହେ ବର୍ଷ ତଳର ଏ ଋଣ
ବଢ଼ି ବଢ଼ି ହେଲ ଯେ ଦୁର୍ବହ !
ଭାଙ୍ଗିବାକୁ ହେବ ମୋତେ
ଅଶୋକବନର ଭୀମ ରାକ୍ଷସ ପ୍ରାଚୀର;
ଯୋଡ଼ିବାକୁ ହେବ
ମୁଗ୍ଧ ପ୍ରଣୟୀ ବୁକେ
ପ୍ରେମିକାର ମୁଦ୍ରିତ ନୟନ
ଗଢ଼ିବାକୁ ହେବ ମୋତେ ଅର୍ବୁଦ ଧମନୀ ।

କୋଟି କୋଟି ବାହୁ
ଚରାଚରେ ମାନବ ସ୍ୱାକ୍ଷର
ଜୀବନର ଦୃଢ଼ ଇସ୍ତାହାର
ମୋତେ ଆଜ ଲେଖିବାକୁ ହେବ ।

ମୋତେ ଆଜ ଲେଖିବାକୁ ହେବ
ତଟିନୀ ତରଙ୍ଗେ
ପ୍ରଭଞ୍ଜନେ ସୁଫସତ
ଲଜ୍ଜାର ଲାଞ୍ଛନ
ଗ୍ଲାନି-ଦଗ୍ଧ ବନ୍ଧୁର ହୃଦୟ
ସମତଳ ବୁଣିବାକୁ ହେବ ଆଲୋକ ବାହନ ।

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବିଗ୍ରହକ,
ତୁମେ ହୁଅ କର୍କଶରୁ କର୍କଶ
ଦୃଢ଼ରୁ ଦୃଢ଼ତର
ପୁରୁଣା ବନ୍ଦୋବସ୍ତର ଜବାବ, ଫୋପାଡ଼
ଅମୃତସମ୍ଭବା ମୋର ମାଟିର ଦୁଲାଳୀ
ମୋ କଳ୍ପନା ସୀତା
ଜନନୀର ସ୍ୱପ୍ନାଶ୍ରିତ ଯନ୍ତ୍ରଣା ବିକଳ
(ତାରେ ଆଜି ଦେଲି ପୁରସ୍କାର)
ନମସ୍କାର କର
ଆହେ ବିଗ୍ରହକ,
ତୁମକୁ ମୋର ଏ ଆଜ୍ଞା
ନମସ୍କାର କର ।

□□□

କୃଷ୍ଣଚନ୍ଦ୍ର ତ୍ରିପାଠୀ

## ମୁଁ

ମୋର ଜୀବନ ନୁହଇ ଆଜର ଗୋ ପାଣି-ଫୋଟକା
ମୁଁ ତ ଅସୀମ କାଳର କପାଳେ ଯିବନି ଲିଭି ଗୋ,
ମୁହିଁ ଏତେ କାହିଁପାଇଁ ହେବ ଅନ୍ତରଛ ଡାଟକା
ମୁଁ ଗୋ ମୋହର କାମନ୍ତି ହସି ହସି କରୁଥିବ ଗୋ !
ମୁଁ ଗୋ ଚିର ସନାତନ ଶାଶ୍ୱତ ଅବିନାଶୀ ଗୋ
ମୋର ଜୀବନ ଗୋ ଖାଲି ଜୀବନ, ଜୀବନ, ଜୀବନ;
ମୁଁ ଗୋ ମହାବିଶ୍ୱର ଆଲୋକେ ଉଠେ ବିଭାସି ଗୋ
ମୁଁ ଗୋ ମହାବିଶ୍ୱରେ ମୁକ୍ତ ମଧୁର ପାବନ ।
ମୋର ଚଉଦିଗେ ଖାଲି ଅମୃତ ଝର ଝରଇ
ମୁଁ ଗୋ କ୍ଷୁଦ୍ର ନୁହଇ ବିରାଟ, ଉଦାର, ମହାନ,

କୋଟି ଅମୃତ ଆଶା ବୁକୁ ତଳେ ମୋର ଭରଇ
ମୁଁ ଗୋ ଆନନ୍ଦ-ଜଳେ କରୁଥିବ ନିତ ସ୍ନାହାନ ।
ମୋର ଦୁଃଖ ବେଦନା ପୁଲକ ଗୋ ସବୁ ସମାନ
ମୁଁ ଗୋ ସବୁରେ ଦେଖିବ ଜୀବନ ମୋହନ ବିଳାସ,
ମୁଁ ଗୋ ମୋହର ଭିତରେ ଦେଖିବ ବିଶ୍ୱ ବିଧାନ
ମୋର ନାହିଁ ନାହିଁ ନାହିଁ ଦାରୁଣ ଦୁଃଖ ପରାସ ।
ମୁଁ ଗୋ ସତ୍ୟ, ଚିର ସୁନ୍ଦର, ଶିବ, ଶୁଦ୍ଧ,
ମୁଁ ଗୋ ସକଳର ଲାଗି ଜାଗିଛି ଏ ମହା ଭୁବନେ,
ମୁଁ ଗୋ ସବୁର ଭିତରେ ହୋଇଉଠେ ଉଦ୍‌ବୁଦ୍ଧ
ମୁଁ ଗୋ କଲ୍ଲୋଳି ଉଠେ ବିଶ୍ୱ ଆକାଶ ପବନେ ।



ଗୋପାଳଚନ୍ଦ୍ର ମିଶ୍ର

## ପୂଜାଚିଠି

ଅନେକ ରାତ୍ରି ବନ୍ଧୁ ଦିନ ପରେ ଆଜ,
କେତେ ସେ ବରଷ ମନେ ପଡ଼ୁନାହିଁ ତାହା,
ଲେଖିଥିଲୁ ପୂଜାଚିଠି, କେବେ କେଉଁ ପରି,
ମନେ ପଡ଼େ ନାହିଁ ତାହା ଏତେ ବ୍ୟବଧାନ ପରେ,
ଫୁଲ ଫୁଟି ଫୁଲ ଝଡ଼ି ଯିବା ପରି ସତେ,
କେତେ ଯେ ଶେଫାଳୀ ସୁମିଳ ଅଣିଣ ପଥେ,
ସେ କଥା ପଡ଼ୁନି ମନେ ଯାହା ଅନ୍ତରର
ତା' ପାଇଁ ପରାଣ ଯାହା ବେଦନାମୁଖର,
ଆଜ ମୁଁ ଲେଖୁଛି ତେଣୁ ତୁମପାଇଁ ସାଥୀ,
ଆଜ ଏ ସ୍ନିଗ୍ଧ ପୂଜା-ପାର୍ବଣ ବେଳେ,
କାଇଁଫୁଲ ଯେବେ ରକ୍ତ ନଗାଡ଼ ଡାକେ,
ବେଦନା ଜାଗଇ ବନ-ବିହଗର ବୁକେ
ମୁକୁଳେ ମୁକୁଳେ ଆକୁଳ ପରାଣ ଲାଗେ
ଚକୋର ଆବେଗ ଜୋଛନା ପରଶ ମାଗେ
ଅପରାଜିତାର ସୀମା ଛୁଇଁ ଛୁଇଁ ବାରେ
କିଏ ସେ ଡାକଇ ଏଣ୍ଡୁ ନଦୀ, ଏଣ୍ଡୁ ପାରେ...

## ଅନନ୍ତ

ହେ ମୋର ବନ୍ଧୁ, କୈଶୋର ବେଳ ସାଥୀ,
ବନ୍ଧୁବନ୍ଧନ ଧରି ତୁମ ସାଥେ ଦେଖାନାହିଁ,
ଜୀବନଯୁଦ୍ଧେ ସଂଗ୍ରାମ କରି କରି
ତୁମ୍ଭେ କେତେଦୂରେ ଯାଇଅଛେ ଅପସରି !
ଜୀବନ ପାଇଁକି ସଂଗ୍ରାମ କରିବାରେ
କିଏ କାରେ ସତେ ମନେରଖେ ଏଇଠାରେ ?
ସଂସାର ଯାହା ଖାଲି ହଳାହଳମସ୍ତ,
ଯାର ଏ ଜୀବନେ ବିଫଳତା ପରିଜସ୍ତ,
ମନେପଡ଼େ ହାସ୍ୟ ସେହି ଦୂର ଅତୀତରେ,
ତୁମର ସେ ପ୍ରିୟ ପଲ୍ଲୀ କୁଟୀର ତଳେ
ଗୋବରଲିପା ସେ ନୂଆଣିଆଁ ଗୃହଘରେ
ଶିଶୁ ବୟସର ସ୍ନେହ ଓ ସୋହାଗ ଭରେ
ବିତୁଥିଲା ସତେ ଆମ କୈଶୋର ବେଳା
ଦାରିଦ୍ର୍ୟଭରା ଜୀବନର ଲୀଳାଖେଳା
କ୍ଷେକ-ଉପାସରେ କେତେ ଦିନ କେତେ ରାତି,
ବିତାଇ ଦେଇଛେ ମନେପଡ଼ୁଛି କି ସାଥୀ ??
ମନେପଡ଼େ ଆଜି, ଖାଇଛେ ପାଚିଲା ତାଳ
ଜାମୁକୋଳି ତୋଳି ଭାଙ୍ଗିଛୁ ଗଛର ଡାଳ !
ସୁନାରି ଲତାରୁ ଗୁଞ୍ଜର ଧରି ଆଣି
ଧାନଫୁଲଭରା ବିଲରୁ ଶୁଖାଇ ପାଣି—
ମାଛ ଧରିଥିଲେ, ମନେପଡ଼ୁଅଛି ଯେବେ
ଏ ଜୀବନେ ସେହି ଖେଳ କି ଆସିବ କେବେ ??
ବାଲିଛତ୍ରୁ ସାଥେ କଳମିର ଶାଗ ତୋଳି
ଦେହ ଓ ମନରେ ବରଷା ସୋହାଗ ବୋଳି
ଗୀତ ଗାଇ ଗାଇ ଘରକୁ ଫେରିବାବେଳେ
ଇସ୍କୁଲ ବନ୍ଧୁର କଶୋର ସାଥୀର ମେଳେ
ଆଉ ସେ ସ୍ମୃତି ଫେରିବ କି ସାଥୀ କେବେ ??
ଆଜି ଏ ଜୀବନ ଲୋଡ଼ୁଅଛି ତାହା ଯେବେ
ଗାଆଁ ଆରପାରି ବଉଳ ଗଛର ଦେହେ
ସୁଉ-ସୁଉ କରି ସମୀରଣ ଯେବେ ବହେ

ଲାଗିଯାଉଥିଲା ଆମ ଦେହେଁ ଶିହରଣ
ମାଲତୀ ଫୁଲର ସଉରଭେ ରଣଭଣ
କହ ତ ବନ୍ଧୁ, ଆଉ ଏ ଜୀବନେ ତେବେ
ଫେରିବ ନାହିଁ କି ଆଉ ସେ ଅତୀତ କେବେ.??

ରାଧାନାଥ,

ମନେଅଛି, ଆମେ ପଢ଼ୁଥିଲେ ପାଠ ପରା
ଆମ୍ର ବକୁଳ ବଗାନେ ଆତ୍ମହରା ।
ସରଳ ଜୀବନ ଆନ୍ତର ସରଳ ସିନା,
ପଲ୍ଲୀ ମୁକୁଳେ ଭ୍ରମର ବଜାଏ ବୀଣା ।
ତୁମେ ହୋଇଥିଲ ଗ୍ରନ୍ଥାଗାରର ପରା,
ତୁମକୁ ସେଦିନ ଭଲଲାଗୁଥିଲା ଧରା ।
ଚନ୍ଦ୍ର-ଚୁମ୍ବର ମଧୁମୟୀ ବସୁମତୀ,
ଜାଣିପାରୁଥିଲ ସରଳ ତରୁଣ ମତି ।
ସ୍ୱପ୍ନଲଗ୍ନରୁ ଉଠି ପ୍ରତିଦିନ କାହିଁ,
ଆଗେ ଧାଉଁଥିଲ ଫୁଲ ସଂଗ୍ରହ ପାଇଁ ।
ଗଙ୍ଗଶିଉଳୀ ବକୁଳ ମାଲତୀ ଆଣେ,
ନାଗେଶ୍ୱର ଅବା ଯେଉଁ ଫୁଲ ଯେଉଁ ମାସେ,
ବିଦ୍ୟାଳୟ କି ମନ୍ଦିର ପରିବେଶେ
ସେହି ସେ ପଲ୍ଲୀ ତଟିନୀ ଉଚ୍ଛୁଳା ଦେଶେ
ପିକ ଗାଉଥିଲା ପ୍ରଭାତେ ଆଦ୍ୟ ଗୀତ,
ସତେ କି ସରଳ ଶିଶୁ ଜୀବନର ପ୍ରୀତ !
ଆଖିପିଛୁଳାକେ ସକଳ କୃତ୍ୟ ସାରି,
ବିଦ୍ୟାସାଧନେ ସକଳ ବ୍ରହ୍ମଚାରୀ,
ଛାତ୍ରାବାସର ସରଳ ଜୀବନଧାରା
କେତେ ଯତନେ ବାନ୍ଧି କରିଲା ପରା,
ଗୁରୁକୁଳ ପ୍ରଥା କରିଲା ଉଦ୍‌ବୋଧନ,
ବିଦ୍ୟାପ୍ରୟାସୀ ଅମୃତ ଜାଗରଣ,
ଛାତ୍ରାବାସର ସରଳ ଜୀବନଧାରା,
ନମ ଚପଲ ସପନ ଛନ୍ଦଭରା,

ନିଜ ହାତେ ନିଜ କାମ କରିବାର ପ୍ରୀତି,
ମନଫୁଲୁଣିଆ ଚପଳ ବୟସ ଗୀତି,
ଡଙ୍ଗିନୀ ଯୁଆଁରେ ଖେଳିବାର ଯେତେ ମୋହ
ଆମ୍ର ମୁକୁଳେ ସଉରଭ ମହମହ
ଝଡ଼ିଯାଇଅଛି ସେଦିନଁ ମୁକୁଳ ସିନା
ଜୀବନ ରହିଛି ସୁଖ ଓ ସୋହାଗ ବିନା ।
ସ୍ୱଶିଦିଗେ ଖାଲି ବିଷଲତା ହଲାହଳ
ଈର୍ଷା-ପୀଡ଼ିତ ଏ ସାରା ଧରଣୀ ତଳ
ସ୍ୱର ଦିଗେ ଖାଲି ସ୍ୱାର୍ଥର ବିଷାସିକା
ନିଦାଘ ରୁଦ୍ର ପିଙ୍ଗଳ ମରୀଚିକା !!

ଗଦାଧର,

ତୁମେ ଆଜି ଦୂରେ କେତେ ଦୂରେ ଗ୍ରାମପଥେ
ମନେ କି ପଡ଼ଇ ଏତେ ଦିନ ପରେ ସତେ !
ଘର ବାଡ଼ିପଟେ ପିଜୁଳି ଗଛର ତଳେ
ଶିଶୁ ବୟସର ଅଗଣିତ ସାଥୀମେଳେ
ପାଠପଢ଼ା ସାରି ଗଛରୁ ପିଜୁଳି ତୋଳି
ମୁଖେ ମୁଖେ ସ୍ମୃତି କୁସୁମପରାଗ ବୋଳି
ଭୁଲୁଥିଲେ ଆମେ ଆଖି କଆଁରେ କାହିଁ
ଆଜିର ଜୀବନେ ମିଳିବ କି ତାହା ନାହିଁ
ଅଶିଣ ମାସର ନେଲି ନେଲି ଧାନବିଲ
ସକାଳୁ ସଞ୍ଜେ ଉଡ଼ଇ ଶଙ୍ଖଚିଲ
ନୀଳପାଣି ଧାରେ ଦେଖାଇ ଆପଣା ମୁହଁ
ଚପଳ ମୀନଂରେ ଫୁଲିଉଠେ ଜଳସୁଅ
ବିଲ ମଥାନରେ ହୁଡ଼ ପରେ ବସି ଧ୍ୟାନେ
ବକ ଯେ କାହାକୁ ଝୁରୁଥାଏ ମନେ ମନେ
ଫୁଟା କଇଁଫୁଲ ଧୋବ-ଫରଫର ହସ
ତୁମ ଆମ ଗାଆଁ ହସୁଥାଏ ବାରମାସ ।
ବରକୋଳି ଗଛେ ବାଦୁଡ଼ି ସାଧଇ ଦାଉ
ସେ କଥା ଆଜି କି ମନେପଡ଼ୁଅଛି ଆଉ

ଜାତୀୟ ଜୀବନ ସ୍ୱରାଜ୍ୟ ଆହ୍ୱାନରେ
ସତେ କି ମନ୍ତ୍ର ଶୁଭୁଥିଲା ଘରେ ଘରେ
ଗାଆଁର ସେପାରି ମେଳଣ ପଡ଼ିଆ ପରେ,
ପବନେ ପବନେ ଜାତୀୟ ପତାକା ଥରେ,
ଶୁଣାଯାଉଥିଲା ଦେଶ-ବନ୍ଦନା ଗୀତ
ସଭା-ସମିତିରେ କାଳ ଯାଉଥିଲା ବିତି ।
ଆଜି ଏ ଦେଶରେ ଏତେ ଦୁର୍ଗତି କାହିଁ ?
ଆଜି କି ଦେଶରେ ମଣିଷତା ସତେ ନାହିଁ !!
କରାଳ ବନ୍ୟା ବାତ୍ୟାରେ ପ୍ରପୀଡ଼ିତ
ସର୍ବନାଶ କି ପଲ୍ଲୀରେ ଉପନୀତ ।
ଘରେ ଘରେ ଖାଲି ଭୋକ ଉପବାସ ସିନା
ଜୀବନ ହେଲାଣି ଶୁଷ୍କ ସପନ ବିନା ।
ସବୁ ପ୍ରତାରଣା ଛଳନା କପଟ ଖାଲି
ଏ ମରୁପଥରେ ଆଉ କି ପାରିବା ଚାଲି ?
ସବୁଠାରେ ଆଜି ବଂଚନା ହୁଏ ସାର
ନାହିଁ ସେ ପୂର୍ବ ସହୃତ ପରିବାର ।
ଯନ୍ତ୍ର-ଯୁଗର ଧ୍ୱଂସର ଘେର ତଳେ
ମଣିଷ ପାଇଁ କି ଧ୍ୱଂସର ଶିଖା ଜଳେ ।
କୀଟ ସମ ତହିଁ ଜଳପୋଡ଼ି ଯିବାପାଇଁ
ଆଜି ଏ ଦେଶରେ ମଣିଷତା ଆଉ ନାହିଁ ।
ଆଜି ଏହି ପୂଜା-ପାର୍ବଣ ଅବସରେ
ଅନେକ ଯାତନା ବ୍ୟଥାର ଅଶ୍ରୁ ଝରେ ।
ମଣିଷ ଦୁଃଖ ତଳେହେଲେ ସୀମା ନାହିଁ
ବନ୍ୟା, ମରୁଡ଼ି, ପଥ କାହିଁ, ପଥ କାହିଁ ??
ଭିକାରିର ଥାଳ, ଜନତାର ପେଟ ଖାଲି
ଅଜି ଦେଶ ସତେ କୁଆଡ଼େ ଯାଇଛି ଚାଲି ?
ତେଲରେ ଅଗରୁ, ଚାଉଳରେ ଗୋଡ଼ିମାଟି
ମିଶାଇ ମିଶାଇ ବୋଲାଉ ସ୍ୱାଧୀନ ଜାତି ।
ତେଣୁ ମଣିଷର ଚରମ ମୁକ୍ତି କାହିଁ
ଆକାଶ ସେପରି ଏଇ କଥା ବାହୁନଇ !

କାହିଁ ସେ ବୁଦ୍ଧ ? କାହିଁ ସେ ସାଧନା ବାଣୀ ?
ଚରମ ମୃତ୍ୟୁ ପାଇଥିଲା ଯେହ୍ନୁ ଜାଣି ।

ଶେଷକଥା,

କହ ସାଥୀମାନେ, କି କଥା ଲେଖିବି ଆଉ ?
ଏହି ଅବସରେ ଲେଖନୀ ନୀରବ ରହୁ ।
ଶରବିଦ୍ଧ ମୁଁ ହେଉଥାଏ ପ୍ରତି କ୍ଷଣେ
ମୋ ଆଗେ ଭୂମିକା କରିଗଲେ ଜଣେ ଜଣେ ।
ଝରାଫୁଲ ପରି ଝରିଯିବି ମୁହିଁ ସିନା
ମୋ କଥା କିଏ ସେ ନ ଜାଣିଲେ ମୋହ ବିନା ।
ଏତିକି ଲେଖି ମୁଁ ଲେଖାରେ ଟାଣୁଛି ଗାର
ଏ ମୋର କବିତା, ଆଗାମୀକୁ ଉପହାର ।

□□□

ବିନୋଦଚନ୍ଦ୍ର ନାୟକ

# ଏ ପୃଥିବୀ

ଫିଙ୍ଗି ଦୂରେ ମାଟିର ନିର୍ମୋକ
ପ୍ରଜାପତି ସ୍ୱପ୍ନ ନେଇ, ଏକଦା ମୁଁ ବିସ୍ତାରିଲି ଡେଣା
ଅନନ୍ତ ନୀଳ ଉର୍ଦ୍ଧ୍ୱକୁ
ନେଇ ଭୁଲିଗଲି ଆହା ଜୀବନସଂଗ୍ରାମେ, ମୁ ବି ଏକ ସେନା ।

ନଦୀ ବନଭୂମି ଗୃହ ଶୃଙ୍ଗାରବତୀର
ଏ ଧରିତ୍ରୀ ସୁଜଳା, ସୁଫଳା
ସ୍ତିମିତ ଚନ୍ଦ୍ରର ସମ ଅସ୍ତତଟେ
ଅପସରିଗଲା ।

ଭାବିଲି ମୁଁ ଫିଙ୍ଗି ଦେଲି ବିଷର ପିଆଲା;
ଉନ୍ମତ୍ତ ପିଆସେ,
ଅସ୍ୱୀକାର କଲି ଏ ମାଟିରେ
କେଉଁ ମଧୁ ଆଶେ ?

ବିଦେଶିନୀ ବାନ୍ଧବୀର ସମ
ସମ୍ମତିର କଟାକ୍ଷ ପ୍ରସରି;
ନୀଳିମା ଆଲିଙ୍ଗି ନେଲି
ଓଷ୍ଠପୁଟେ ସୁରାପାତ୍ର ଧରି ।

ମୃଗନାଭି ପ୍ରେମ ନେଇ
ତାହା ପରେ ଗୁଲିଲି ଚକିତେ
ମେଦୁର ମେଘ ତୋରଣ ଲଙ୍ଘି କେଉଁ ଦୂରର ଇଙ୍ଗିତେ
ତାରକାରେ ତାରକାରେ
ଶିଖାର ପ୍ରକାଶେ ଅନ୍ଧ ପତଙ୍ଗର ସମ
ଆକାଶର ନୀଳେ ନୀଳେ ରଚି ସନ୍ତରଣ ।
ଗାଇଲି ମୁଁ ସ୍ୱ ଅର୍ଥୀର ଗାନ
ରୋମନ୍ଥନ କରି ଖାଲି ଇଚ୍ଛା ଅଭିମାନ
ସେ ସଙ୍ଗୀତ-ମୂର୍ଚ୍ଛନାରେ ଅନୁଭବ କଲି ଅକସ୍ମାତ
ସମବେଦନା ବିହୁନେ ଛନ୍ଦ ତା'ର
ଅନ୍ତରେ ମୋ ପ୍ରହାରେ ଆଘାତ ।

ସହସା ଦେଖିଲି ଅଗ୍ରେ ଧରିତ୍ରୀର ମରୀଚିକା ଛାୟା
ସ୍ନିଗ୍ଧ ନୀରବେଣୀଘେରା ପ୍ରାନ୍ତରର ମାୟା,
କେତେ କମ୍ପିତ ଓଷ୍ଠର ସ୍ପର୍ଶ, କେତେ ବାହୁ ଆଲିଙ୍ଗନ,
କେତେ ନୀବିବନ୍ଧ ଉନ୍ମୋଚନ,
ଗୁଣ୍ଠନ ତଳର କେତେ ଅଶ୍ରୁ ଅଭିମାନ
ତନୁ ତନୁ ଘାତେ ବେପଥୁର କମ୍ପମାନ ।
ଦେଖିଲି ମୁଁ ମିଥୁନର ଛବି
ଗୁଚ୍ଛ ଗୁଚ୍ଛ ଶସ୍ୟ ଆଉ ଶଙ୍ଖ ଶ୍ୱେତ ମଧୁର ମାନବୀ ।
ସ୍ୱେଦ ଦେଇ, ରକ୍ତ ଦେଇ ଗୃହେ ତା'ର ଆଣେଇ ମାନବ
ନୂତନ ପ୍ରାଣର କଳରବ

ତାର ମଧ୍ୟଦେଇ ରଚେ । କ୍ଷୁଣ୍ଣ କର ଆଁଶ ଓ ଆସ୍ଫୁଷ
ସେ ଆଣେ ପ୍ରାଣର ସନ୍ତୋଷ ।
ଇଚ୍ଛାମତୀ ନଦୀଟିର ପାଶେ
ଦେଖିଲି ଯେଂ ବାଳକାଟି ଭଲପାଇ ଆନ କା'ର ବଧୂ ହୋଇଗଲା
ମୋ ପୃଥିବୀ ସେ ହୋଇଣ ଆସେ ।
ଆକାଶର ଯେତେ ନୀଳ ଯେତେ ନିଶା ଦୂର ସଙ୍କେତର
ଆଚମ୍ବିତେ ହେଲା ଦୂରତର
ମୃତ୍ତିକାର ବିଷପାତ୍ର ଦୁଇହାତେ ତୋଳି
ଆକଣ୍ଠ ତୃଷାରେ ପାନକଲି ।
ଅଗ୍ନିସ୍ନାନେ ପତଙ୍ଗର ସମ, ହୋଇ ଭଗ୍ନଡ଼େଣା
କ୍ଷତ ରକ୍ତ ସ୍ନେହା
ହୋଇ, ପଡ଼ିଗଲି ନରଲୋକେ ।
ଚେତନାର ନୂତନ ସଂଘାତେ
ଦେଖିଲି ବଳିଷ୍ଠ ବାହୁ ଘେରି ଏ ଧରିତ୍ରୀ
ବଧୂସମ ଭିଡ଼ିଅଛୁ ମୋତେ ।

□□□

ଜ୍ଞାନାନନ୍ଦ ବର୍ମା

## ବାମପଥ

ଶବ-ତାନ୍ତ୍ରିକ ଚିରନ୍ତନ ଦୁନିଆର
ବର୍ଣ୍ଣନେଇଥିଲା ବାମାଙ୍ଗିନୀର ପଥ
ଆଜି ନେଇଅଛୁ, ଶବ-ଯାନ୍ତ୍ରିକ ସଖି
ତମର ସନ୍ଧତେ ବାମପଥେ ଗୁଳା ରଥ ।

କିନ୍ତୁ ସେ ପଥେ ଫୁଲ ଆଉ ନାହିଁ ଫୁଟେ,
ପ୍ରଣୟ କାବ୍ୟ, ସୁର ଆଉ ନାହିଁ ଝରେ,
ଯାତ୍ରାର ଜାଲେ ଯୌବନ ମରଅଛୁ,
କଙ୍କାଲ ତଲେ ଜବ ଅଭିସାର କରେ ।

ଆଗରେ ପଡ଼ିଛି ଦୁରବନ୍ଧୁର ପଂଥ
ସ୍କନ୍ଧେ ପଡ଼ିଛି ତମର କ୍ଲାନ୍ତ ତନୁ,
ବାମପଥ ଢଏ ଖାଲି ତାଣ୍ଡବ ଡାକ
ଧ୍ୱଂସର ପରେ ସୃଷ୍ଟି ରହିଛି ଯେଣୁ ।

ହୁଏତ ତମର ଶବଟାକୁ ତଳେ ରଖିଁ
ଅସ୍ଥିରୁ କାଢ଼ି ମାଂସ ନଏ ତ ଗୃଧି,
କନ୍ତୁ ତାକୁ ସେ ଇତିହାସ ପାଇଁ ରଖେ
ଯାଉଅଛି ସେ ଯେ ହାତଠାରି ମତେ ଡାକିଂ ।

ହୁଏତ ତମକୁ ବଞ୍ଚାଇବାର ହେଲେ
ବାମପଥ ଛାଡ଼ି ଦକ୍ଷିଣେ ଯାଇପାରେ,
ତମର ଚଳନ୍ତ ଯୌବନ ପାଲଟାଇ
ଜୀବନକୁ ପୁଣି ସମ୍ଭୋଗ ଦେଇପାରେ ।

କହ ସଖି କହ, ଲକ୍ଷ କ୍ଷୁଧାର ପାଶେ,
କେମନ ରଚିବ ଗୃହୁ ଅନ୍ନର ଭୋଜ,
ଆତ୍ମାରେ ସେ କି ସନ୍ତୋଷ ଦେବ କହ,
ସଂଗ୍ରାମେ କାହିଁ ଢାଳିବ ନୂତନ ତେଜ ।

ସଂଗ୍ରାମେ ତହୁଁ ବରନେଇଅଛି ପଥ °
ବାମପଥେ ରଥ-ଅଶ୍ୱ ଯାଇଛି ଗୃଲି
ଦକ୍ଷିଣେ ଯେତେ ରକ୍ତ-ଶୋଷକଦଳ
ସେ ସକଳେ ଦେବ ହତ୍ୟାର ଶର ଗୃଳି ।

ଶବରୁ ତଥାପି ତମେ ଶୀତ୍କାର ଛାଡ଼ି
ହତ୍ୟାରେ କାହିଁ ଜୀବନ ସଂବକାଶ ?
ପ୍ରତିହିଂସା ଏ ମୋର ଭାବନାହିଁ ସଖି,
ପ୍ରତିକାର କହ ଏହାଠାରୁ ଅଛି କିସ !

ଶବ-ଦେହ ଧରି ଦକ୍ଷିଣେ ତମେ ଯାଅ
ତନୁ ଲଭ ପାଇଁ ରକ୍ତ ମାଗିବ ଦ୍ୱାରେ,
ଯଦି କେହି ଦେବ, ଅସ୍ତ୍ର ଛାଡ଼ିବ ସତ,
ଦୀକ୍ଷା କରିବି ଜୀବନରେ · ନବ ବ୍ରତ ।

ମାତ୍ର ଏହା ଯେ ସତ୍ୟ ଓ ପ୍ରମାଣିତ
ତମ ହାତେ କେନ୍ଦ୍ର ଟେକବାର ଆଗୁ ଦାନ,
ଅସ୍ଥିରେ ତବ ଯଦ୍ଧ କାଷ୍ଠ ରହୁଥାଏ
ତାକୁ ନେବା ପାଇଁ କରିବନି ଦ୍ୱିଧାଙ୍କନ ।

ସେତକ ବି ନେଇ ଦେବ କି ସେ ନାହିଁ ଦାନ,
ଦାନ ଆଉ କାହିଁ ମୂଲ୍ୟ ହେ ହୋଇଯାଏ,
ମୂଲ୍ୟ ପାଉଥିଲେ ମଣିଷର ଲକ୍ଷ୍ୟ, ଲୁହ
କଙ୍କାଳେ ଖାଲି ସୃଷ୍ଟି କପାଇଁ ଗୁଏ ।

ପଥର ପ୍ରଶ୍ନ ଆଉ ନାହିଁ ସଖି, ବାକି
ତମରି ଶବର ଗଳିତ ଗନ୍ଧ ଆଜି,
ଅନ୍ଧ କରିଛୁ ଗୋଟିଏ ସରଣୀ ପରେ,
ଦୂରେ ଉଠଅଛୁ, ସଂଗ୍ରାମ ବେଣୁ ବାଜି ।

ତମରି ଗଳିତ ଗନ୍ଧ ଏ ଝରୁଥାଉ
ସ୍କନ୍ଧେ ତମରି ଶବ ରହୁଥାଉ ପଡ଼ି,
ଅନାଥ ଦହନେ ତାଣ୍ଡବ ତାଳ ପାଇଁ
ମୋର ଗତି ସଦା ବାମପଥେ ଦେଉ ରଡ଼ି ।

□□□

ଗୁରୁପ୍ରସାଦ ମହାନ୍ତି

## ଅଲକା ସାନ୍ୟାଲ

ତୁମକୁ ବା ଯତି ବାରୁ ଦେଖିଥିଲେ କେବେ
ଜାଣେ ନାହିଁ ଅଲକା ସାନ୍ୟାଲ
ଯେତେବେଳେ ଆକାଶରେ ସ୍ୱର୍ଣ୍ଣଚିତା ବାଘ ଅବା ହରିଣର ଛାଲ
ଅବା ଥିଲ ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ମୁଁ ତୁମକୁ ଦେଖେ ଆଜି ତୁମେ ହଅ ବ୍ଲାଉଜର ବୋତାମ
ଗ୍ବ'ଦାଗ ତୁମେ ଧୁଅ ସେମିଜରୁ ଗରମ ପାଣିରେ,
ତୁମେ ପୁଣି କଥାକୁହ ମୁହଁପୋଛ ଟେବୁଲ ସେପାଖେ
ତୁମେ ପୁଣି ଉଠିଆସି ଆସ୍ତେ ବସ ପାଖ ଚଉକିରେ ।

ଦୁ'ପହର ଧୂଳି ଉଡ଼େ 'ଖାକି ଆଉ ଫିଲ୍ଡ଼ ଗ୍ରେ ଧୂଳି'
ସିଗାରେଟ୍ ଧୂଆଁ ପୁଣି ସ୍ଥିର ହୋଇ ବସିଯାଏ ଜଙ୍ଗଫୁଲ
କାଗଜଫୁଲରେ
କାଉ ଆଉ ବାଦୁଡ଼ିର ଚେଁ-ଚୁଁ ମିଶିଯାଏ ଏକାଠି ବାହାରେ
କୋଇଲାର ଧୂଆଁ ପୁଣି ନଣ ମୋଡ଼ ମୋଡ଼ ଉଠେ,
ରିକ୍ସାବାଲା ବାଟ ଯାଏ ଭୁଲି ।
ତୁମକୁ ଦେଖେ ପରେ ଜୋତା ଷ୍ଟ୍ରାପ୍ ତୁମେ ଧୀରେ ଖୋଲ
ତୁମେ ଆସି ଲେଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ି ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍‌ଠାକ୍ କର
ଟାଉନହଲ ସଭାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତୁମକୁ ବା ସତିବାବୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିଲାବେଳେ ତୁମେ କଲ ଜୟଜୟକାର
ତା ପରେ ବା ପୁଣି କେବେ ନୂଆଖାଲି ପଠାଣ ବସ୍ତିରୁ
ଭାରତର ସ୍ୱାଧୀନତା ଦେଲା ପୁଣି ଦ୍ୱିତୀୟ ନିସ୍ତାର ।

ଦ୍ୱିପ୍ରହର କ୍ଲାନ୍ତ ହୁଏ ସନ୍ଧ୍ୟା ଆସେ ରେଳପୋଲ ଆଡ଼ୁ
କୋଇଲା ଚୁଲିର ଧୂଆଁ ଆଉ ଦେଖାଯାଏ ନାହିଁ,
ଚୁପ୍‌ଚାପ୍ କାଉ ଓ ବାଦୁଡ଼ି.
ସିଗାରେଟ୍ ଧୂଆଁ ହୁଏ ଆସ୍ତର ଜମାଟ ପୁଣି
ନରଗିସ୍ ନେତାଜୀ-ଫଟୋରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ ଅକସ୍ମାତ୍ ଗୋଲ ତାର
ତଳଓଠ ଦାଗରେ କାମୁଡ଼ ।

ମୁଁ ତୁମର ଶୁଣେ ଆଜି ଝଡ଼ ପରି ଭୀଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚଟି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନିଏ ସଡ଼କରୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଁକୁ ବାଦୁଡ଼ିର ଚେଁ ଚ୍ଚୁଁ, ପୁଣି ଏତେ ଯିବା ଓ ଆସିବା
କଣ୍ଟକରେ ଗଳି ଗଳି ରାସ୍ତା ଛକରେ ଛକରେ
ବାଢର ପ୍ରସୂତ-କଷ୍ଟ ସକାଳର ରୁଗ୍ଣ ଜନ୍ମ ନେବା ।

ତା ଭିତରେ ତୁମେ ପୁଣି ପ୍ରେମ କର, ଗର୍ଭବତୀ ହୁଅ
ସିନେମାର-ହ୍ୟାଣ୍ଡବିଲ୍ ମୁଁ ଦେଖିଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନଏ ବାଲିରୁ ସାଉଁଟି
ମୁଁ ତୁମର ସ୍ୱପ୍ନ ଦେଖେ ମୋର ତଳି ପାଇଜାମା
କାମିଜର ଅମରାବତୀରେ ।



ଚନ୍ଦ୍ରାମଣି ବେହେରା

## ବେଙ୍ଗ

ଏଇ ଯେ ବସିଛି ବେଙ୍ଗ
ଚନ୍ଦ୍ରାମଗ୍ନ ଦାର୍ଶନିକ ଭଳି
ତୁମେ କି ଦେଖିଚ ତାକୁ ?
ତୁମେ କି ଚହ୍ନିଚ ତାକୁ ?
ଦୁଇଟି ତା ସ୍ଥିର ଆଖି ଭରି
ରହିଅଛି ହତାଶ କାଳିମା
ଅବସରପ୍ରାପ୍ତ ବୃଦ୍ଧ
ହୁଏତ କେ ଅଧ୍ୟାପକଙ୍କର ।
ହୋଇପାରେ ସେ ହତାଶା
ଜ୍ଞାନଚର୍ଚ୍ଚା ଶେଷ ପରିଣତି ।

ଅବା କେହି ବୃଦ୍ଧ ବଗୁରିକ
ଶେଷପଥେ ଡାଇବେଟିସ୍ ରୋଗୀ
ମୁହୂର୍ତ୍ତିର ଅବସରେ
ଧ୍ୟାନମଗ୍ନ ହୋଇ ମନେ ମନେ

ଦେହେ ଢାଙ୍କି ପରିଚିତ କଳା କୋଟ୍ ଏକ
ଖବର ଅଜ୍ଞାତ କିମ୍ବା ଦଣ୍ଡାଦେଶ ଅନ୍ତିମର ମନ୍ତବ୍ୟ
ସଂସାରର ଦୋଷୀ ଜନ ପ୍ରତି;
ହୁଏତ ଭାବୁଛ ମନେ ଦେଖୁଛି ନିଷ୍ଟଳେ
ଏ ଦୁନିଆ ଚାଲିଛି ତା ବାଟେ
ଯୀଶୁ ଗାନ୍ଧୀ ରକ୍ତ ପିଇ ପିଇ;
ସେଇଭଳି ବସିଛ ଏ ବେଙ୍ଗ
ତୁମେ କି ଦେଖିଛ ତାକୁ ?
ତୁମେ କି ଚିହ୍ନିଛ ତାକୁ ?

ମାଟି ସଙ୍ଗେ ମାଟି ଭଳି ମିଶି
ଭିଡ଼ି ତାର ସରୁ ସରୁ ପାଦ
ବସିଅଛି ଯାତ୍ରୀ ଏକ
ଯାତ୍ରାପଥେ ହୋଇ ଗତକ୍ଲାନ୍ତ ।
ସେହିପରି ବସିଛି ଏ ବେଙ୍ଗ
ଚାହିଁଅଛି ଦୂରପଥେ ପୁଣି
କାହିଁକି ଚାହିଁଛି ? କଅଣ ଚାହିଁଛି ?
ହୁଏତ ଚାହିଁଛି ଆଶା—ସାଥିଜନ ସାନ୍ତ୍ୱନାର ଆଶା
ଦିବସ ଆଲୋକ କିମ୍ବା ଦୂର ରାତ୍ରି ନକ୍ଷତ୍ରର କାନ୍ତି
କିମ୍ବା କିଛି ଖଦ୍ୟୋତ-ଆଲୋକ ।
ମାଆ-ଭାଇ-ଭଉଣୀ ତା ନାହିଁ
ଏ ବିଶାଳ ଧରଣୀର ପୁରେ
ହଜିଇଛି ସାଥୀ ପରିଜନ
ଜୀବନର ଅନ୍ତରଙ୍ଗ ବନ୍ଧୁ
ସତେ ଅବା ମୂର୍ତ୍ତିବନ୍ତ ବ୍ୟଥା ପିଣ୍ଡ ଏକ ।
ସେଇଭଳି ଏଇ ବେଙ୍ଗ
ବସିଅଛି ତୁମ ଆଗେ ଏକାକୀ ନିର୍ଜନ
ତୁମେ କି ଦେଖିଛ ତାକୁ ?

ତୁମେ କି ଚିହ୍ନିଛ ତାକୁ ?
ଏଇ ବେଙ୍ଗ ଦେହେ ତାର ପିନ୍ଧି
ଛେଡ଼ିଆ କଳାକୋଟ କଳା ପାଇଜାମା

ଉପାସନାରତ କେହ୍ନି ଯାଜକ ବା ପୁରୋହିତ ସମ
ଧୀର ସ୍ଥିର ଶାନ୍ତ ଭାବେ
କୀଟର ଅପେକ୍ଷା ରଖେ
ଖାଦ୍ୟର ଅପେକ୍ଷା ରଖେ
ବକ୍ଷେ ଭରି ସ୍ୱାଦ-ପ୍ରଲୋଭନ ।
ତୁମେ କି ଚିହ୍ନିଚ ତାକୁ ?

ତୁମେ କି ଦେଖିଚ ତାକୁ ?
ଫକ୍‌ଫକ୍ ଡେଇଁ ଯାଇ
ଲୁଚିଯାଏ ଆଖି ଅନ୍ତରାଳେ
କେଉଁ ବଳେ ଅବା ବୁଦା ମୂଳେ
ଦୃଶ୍ୟ-କାବ୍ୟ ଅଭିନୟ ସାରି
କଳା-ପଟୁ ଅଭିନେତା ସମ ।
ଅବା ଶିଶୁ ଜନ୍ମ ଅଜଣାଲୋକ ଭୟେ
ଯେଉଁପରି ନିଏ ଯାଇ
ତା' ଜନନୀକୋଳର ଆଶ୍ରୟ,
ଗୃହେଁ ଅଙ୍କ-ଅଙ୍କକାର
ସେଇ ଶାନ୍ତ—ସେଇ ଶାନ୍ତ ଶ୍ରେୟ
ତାଆପାଇଁ—ହୁଏତ ବ ଶ୍ରେଷ୍ଠ ଜନ୍ମ ପାଇଁ,
ସେଇପରି ଏଇ ବେଙ୍ଗ
ନିଏ ଶାନ୍ତ-ସୁଡ଼ଙ୍ଗ ଆଶ୍ରୟ
ତୁମେ କି ଦେଖିଚ ତାକୁ ?

ତୁମ ଆମ ଗୋଡ଼ତଳେ
ଏ ବେଙ୍ଗ ଗଳିଯାଏ ପୁଣି
କେବେ ଭୀରୁ—କେବେ ପୁଣି ଚଞ୍ଚଳ ଖେଳପିଲା ସମ
ସରଳତା-କୁତୂହଳ—କେବେ ବ ସେ ଆତଙ୍କର ମୂର୍ତ୍ତି
ତୁମେ କି ଦେଖିଚ ତାକୁ ?
ପୁଣି କେବେ କ୍ରୀଡ଼ା କାମୀ ସଂସ୍କାରବିଶ୍ୱାସୀ
ପଲ୍ଲୀଗ୍ରାମ ବାଳକବାଳିକା
ଏଇ ବେଙ୍ଗ-ବଛା ଧରିଆଣି
ଗ୍ରାମ ଦାଣ୍ଡେ ବିରଚନ୍ତି ନୃତ୍ୟ

କରିବାକୁ ତୃଷ୍ଣା ଆବାହନ
ବୃଷ୍ଟିହୀନ ଶସ୍ୟହୀନ ଦେଶେ,
ଏହି ବେଙ୍ଗ ବର୍ଷା-ସହଚର
ଅଭିଶପ୍ତ-ଇନ୍ଦ୍ର-ପରିଜନ
ତୁମେ କି ଚହ୍ନିଛ ତାକୁ ?

ପୁଣି ତୁମେ ଦେଖିଛ କି
ଆଜୀବନ ରଙ୍ଗାକାଙ୍ଖୀ କେଉଁ ଲେଖକର
ଶୋଚନୀୟ ଶେଷ ପରିଣତି ?
ଖେଳାଇ ଆନନ୍ଦ ଦେଇ ଅନ୍ୟକୁ ସେ ନିଜେ
ହୁଏ ଶେଷେ ମୃତ୍ୟୁଗ୍ରସ୍ତ ଜଡ଼ପିଣ୍ଡ ଏକ
ଅନ୍ୟର ସେ 'ଆହା' ପଦ
ଅବା ଘୃଣା ବିରକ୍ତିର ପାତ୍ର !
ସେହିପରି ଏହି ବେଙ୍ଗ
ବିଜ୍ଞାନଶ୍ରେଣୀର ଏକ ଲାବୋରେଟୋରିରେ
ପଡ଼ିଥାଏ କଣ୍ଠାବିଦ୍ଧ ପ୍ରାଣହୀନ ହୋଇ
ତୁମେ କି ଦେଖିଛ ତାକୁ ?
ପଡ଼ିଥାଏ ଅବହେଳେ
ସତେ ଅବା ଘୃଣ୍ୟ ବସ୍ତୁ ଏକ ।
କିନ୍ତୁ ଏହି ବେଙ୍ଗ—ନିଷ୍ଠୁରିତ ଏହି ଶାନ୍ତ ବେଙ୍ଗ ।

ହୁଏତ ବରଇ ମୃତ୍ୟୁ ତୁମ ଆମ କୌତୁକର ପାଇଁ
ଦେବପୁତ୍ର ଯୀଶୁ ଭଳି ଅବା—ମର୍ତ୍ତ୍ୟେ ଯୀଶୁ ଜନ୍ମ ପାଇଁ
ମନୁଷ୍ୟର ଜ୍ଞାନଚର୍ଚ୍ଚା—ମନୁଷ୍ୟର ସୁଖଶାନ୍ତି ପାଇଁ
ଏହି ବେଙ୍ଗ ଦେଇଯାଏ—
ଶେଷେ ତାର ପ୍ରାଣବଳି ଆହା
ପୃଥିବୀର ପ୍ରୟୋଜନ ପାଇଁ ।
ତୁମେ କି ଚହ୍ନିଛ ତାକୁ ?
ସେହିପରି ତୁମ ଆମ ପ୍ରାଣ
ମୃତ୍ୟୁ ପରେ ଯାଏ କେଉଁ ଦେଶେ ?
ଆଶ୍ରା ନିଏ କେଉଁ ତରୁମୂଳେ
ତୁମେ କି ଦେଖିଛ ?

ତୁମେ କି ଦେଖିଚ ମୁଣି
ଏଇ ଦେହେ ପ୍ରୟୋଜନ ଲାଗେ ଅବା ନାହିଁ
ଖେଳ ପାଇଁ—ଜ୍ଞାନଚର୍ଚ୍ଚା ପାଇଁ
ଯାଦୁକର କେନ୍ଦ୍ର ମାଷ୍ଟାଙ୍କର
ମୁଷ୍ଟି ପରେ ?
ତୁମେ କି ଦେଖିଚ—ତୁମେ କି ଚିହ୍ନିଚ
ଏଇ ବେଙ୍ଗ—ପିତାମହ ବେଙ୍ଗ ?

□□□

ବେଣୁଧର ରାଉତ

## ସାର୍

ସାର୍ କେବେ କହୁଥିଲେ କ୍ଲାସରେ ବାଲ୍ୟର ଏକଦା,—
(ପୂରାପୂରି ମନେନାହିଁ)—
"ଆବେଗ ଓ ଇତିହାସ ମିଶା ଅଧା ଅଧା—
ସୁନାର ଫସଲ କଥା ଧରାର ଏ ସ୍ୱର୍ଗିକ ମାଟିରେ,
ବୈଦିକା ସୁ-ବର୍ଣ୍ଣା ଉଷା-ରଞ୍ଜିତ ଏ ଜନର ମଠରେ
ସୂର୍ଯ୍ୟର ରକ୍ତିମାସ୍ନାତ ମେରୁଗିରି ସୁନାର ଭୂଧର,
ବରୁଣର ନୀଳଦେଶେ କଳିଙ୍ଗର ବୋଇତ-ବହର
ଆପିବା ସୁବର୍ଣ୍ଣଦ୍ୱୀପ, ସୁନାସିଂହ ହସଖେଳ କଥା—
ଏଇପରି କେତେ କ'ଣ—ମିତବାକ୍ୟେ ଅଦ୍ଭୁତ ବାରତା ।
ସାର୍ଙ୍କ ଆବିଷ୍ଟ କଣ୍ଠ ବାଲ୍ୟର ମୋ ବିହ୍ୱଳ ଆଖିରେ
ଆଙ୍କିଥିଲା ଅତୀତର ପ୍ରାଣବନ୍ତ ଛବି ଏକ ବର୍ଣ୍ଣାଢ଼୍ୟ ଭୂଇଁରେ ॥

ଇଆପରେ ଦେଖିଛି ମୁଁ ବାରବାର ସୁବର୍ଣ୍ଣର ସେଇ କଳ୍ପଛବି
ଆପଣା ସୃଜନମୁଗ୍ଧ ଶିଳ୍ପୀ ପରି ପ୍ରାଣ ଦେଇ, ଦ୍ରବି;
ସେଇ ଛବି ବିଭୂତିର ଗହ୍ୱରରେ ସାର୍ଙ୍କର ଆବିଷ୍ଟ ସଙ୍ଗୀତ
ଶୁଣିଛି ମୁଁ ଅପ୍ରମାଣ ମୂର୍ଚ୍ଛନାରେ ହୋଇ ବିହ୍ୱଳିତ ॥

କିନ୍ତୁ ସେ ଅନ୍ତିନ ଅବା ନଭିଗଲା ! ଦେଖିଲି ମୁଁ
ସୁନା ଖାଲି ସୁନା;
ବାଲ୍ୟର ବ୍ୟଞ୍ଜନା ହାସ୍ୟ ଭୁଲିଗଲି ରଖି ମାତ୍ର କର୍ସ୍ୱତ୍ୱ ନମୁନା
ବନ୍ଦଣା, ସୁବର୍ଣ୍ଣ-ଦ୍ୱୀପ, ଉନ୍ମସ୍ୱିନୀ, କିଛୁ କିଛୁ-ସୁନାଫଳ,
ସୁନାର ଫସଲ ।
ଫସଲକଟାର ଗୀତ ଭୁଲିଗଲି ସାର୍ ଙ୍କର—ଭୁଲିଗଲି
ସୁନାର ଗଜଲ ।
ଯାହା କିଛି ରହିଗଲା ସାଦା ସାଦା ପ୍ରତିଧ୍ୱନି କିଶ୍ୱତ୍ ଲହର—
ଆବେଗର ସତ୍ତା ନାହିଁ, କାହିଁ ଗଲା ହଜି ସେଇ
ପ୍ରାଣର ବହର !!
ସାର୍ଙ୍କୁ ଭେଟିଲି ଏବେ ଅକସ୍ମାତ୍ ଶୀର୍ଣ୍ଣ ଏକ
ଫହୁତ ସନ୍ଧ୍ୟାରେ ।
ଜନ୍.ବାଗ ଦୂର୍ବାଦଳ ବହଳରେ ଅଧା ଅଧା
ଆଲୋକ-ଅନ୍ଧାରେ ।
ସହଜେ ହେଲିନି ଚହ୍ନି; ଏ ମୂର୍ତ୍ତିରେ ଅଙ୍କିତ ବା ଜଗତର ବୟସ
ଅପରିଚୟରେ ଯେହ୍ନେ ପରିଚୟ, ପରିଚୟ
ଅବୋଧ ରହସ୍ୟ ॥
ବ୍ୟଥିତେ କହିଲେ ସାର୍, 'ସୁଖୀ ହେଲି ଦେଇଯିବି
ମୋର ଶେଷବାଣୀ
ଶେଷର ଭରତବାକ୍ୟ—ସତ୍ୟଟିଏ—ହୃଦୟର
ନଭୁତ କାହାଣୀ ।
ସୁନା ଫସଲର ଗାନ, ସୁନାମେରୁ, ସୁନାର ବାରତା
ଯାହାକୁ ଯା ଦେଇଥିଲି ସୁନା ଆଖି—ସବୁ ଅତିକଥା ।
ସକଳ ଇ ସେ ଆଖିରେ ସୁନା ଦିଶେ, (ଦେଇଚ ଆମସ୍ତ !)
ସେ ସୁବର୍ଣ୍ଣେ ଦୀନ ଦୁଃଖୀ—ଦୁଃଖତାପ ଦିଶେ ଛଳ
ମଞ୍ଜୁଳ ଶ୍ରୀମସ୍ତ ।
ଖୁଣ୍ଟିଁ ଫେରାଇନେବି ସୁନା ଆଖି, ଯାବତ ସୁନାର,
ସତ୍ୟରେ ଆବେଗ ପ୍ରାୟ ମିଶେ ନାହିଁ, ଯଥା ଏଇ
ଆଲୋକେ ଅନ୍ଧାର ।
ଆସନ୍ନା ଲେଉଟି ଯେବେ କଲେ଼ସର ପୀତ ପୀତ
ସେ ହଳଦ୍ୱା ଦିନ

ବାଲ୍ୟର ସମଗ୍ର ମନେ ଫୁଟାନ୍ତି ମୁଁ ମାଟିଫୁଲ
ଯାତନାର, ଅଥଚ ଶାଳୀନ ॥
ଦେଶ ମୁହିଁ ଭଲପାଏ । ତଥାପି ଏ ଦେଶଟା କ
ବିଚିତ୍ର ଖିଆଲ !
ଚଳଣିର ଧାରା ଧର୍ମେ, ଧନେ, ମନେ, ଜନେ ଜନେ
ଆକାଶ ପାତାଳ ।
ହୁଏତ ଫର୍ଣ୍ଣଲେ ସୁନା ଏ ପାଟରେ ଲେନ୍ତ ଲେନ୍ତ
ନଖିଲ ବିଳାସେ,
ସେ ପାଖେ ଜୀବନ ଖୋଜେ ଅଧ ପାଖେ
ମଣିଷଇ ମୁଠାର ପରାସେ ।'
କାହିଁକି ସମସ୍ତ ରହି କହିଲେ ସେ, 'ଯାହା ମୋର
କହିବାର କଥା
ବୋଧ ଅଧ, ଆଚ୍ଛା ତୁମେ ଦେଖିଥିବ
ବମ୍ବେ ଦିଲ୍ଲୀ ଅବା କଲିକତା
ଏଣିକି କହିବା ଆଗେ ବସୁଧା ଇ ପରିବାର
ଅବା ମୈତ୍ରୀବାଣୀ
ପାଖର ମଣିଷ ଚିହ୍ନ' । ସାର୍ଙ୍କର ଗ୍ରୁହାଣିରେ
ଏବେ ମୁହିଁ ନୂଆର ସନ୍ଧାନୀ ।

□□□

ଜାନକୀବଲ୍ଲଭ ମହାନ୍ତି

## ବଣଭୋଜି

ଆମେ କେତେ ନରନାରୀ ଧନୀ ମଧ୍ୟବିତ୍ତ
ମାନନୀୟ ତଥା ସ୍ନେହାସ୍ପଦ
ଆପଣାର ସ୍ଫିତି ଆଉ ଉଲ୍ଲାସକୁ ଭରିଦେଇ ମଟର ବସ୍‌ରେ
ଆମେ ଦିନେ ଦୂରେ ଛୁଟିଗଲୁ
କେତୋଟି ମୁହୂର୍ତ୍ତ ପାଇଁ ଆମର ଯା ପରିଚୟ
ତାହା ଭୁଲିଗଲୁ
ସେତେବେଳେ ଆମ୍ରଗଛ ବଉଳସମ୍ଭାର

ଦେହ ଓ ମନରେ ରଙ୍ଗ
ରଙ୍ଗ ପୁଣି ଅଧରେ ଅଧରେ
ବକାକଣା ଗହଳ ଚହଳ
ଗ୍ରାମ ଉପକଣ୍ଠେ...
ବାଣ ଫୁଟ ମେଢ଼ ପଲଟଣ
କଳାଘୋଡ଼ା ନଉଡ଼ ଖେଳରେ
କର୍ମ ଥିଲା ମେଳଣ ପଡ଼ିଆ
ଝାଞ୍ଜ, ଖୋଳ, ଖଞ୍ଜଣି ବାଦ୍ୟରେ

ଆଖିରେ ନାଚିଲା ବନ୍ଧୁ ଦିଗ୍‌ବଳୟ
ଝରକା ଭିତରୁ ଆମେ ସିନେମା ଦେଖିଲୁ ।
ଅଚିହ୍ନା ଜଗତ କେତେ ଅଚିହ୍ନା ମୁଖଶ୍ରୀ
ବାଟଚଲା ଅଜଣା ପଥିକ
ହୁରୁଡ଼ା ବଳଦ କାନ୍ଧୁ ଆମଲାଗି ଯୁଆଳି ଫିଟିଲା
ଆମେ ସବୁ ପରସ୍ପରେ ଭଲକରି ନିଜକୁ ଚିହ୍ନିଲୁ ।

ଆମେ ବାଛିନେଲୁ ଏକ ଉଦ୍ୟାନର ସ୍ଥଳୀ
ସମ୍ପୂର୍ଣ୍ଣ ଅପରିଚିତ, ନୁହେଁ ଯା ଆମର
ଯାହାକୁ ଏଇଠି ରଖି ଆମେ ସବୁ ପୁଣି ଫେରିଯିବୁ
ତଥାପି ତାହାକୁ ଘେରି
ଆମେ ସବୁ ମନଇଚ୍ଛା ବନ୍ଧୁତ ଖେଳିଲୁ;
ଚୁହିଁରୁ ମିଳିଲା ଯାହା ଆନନ୍ଦରେ ତାକୁ ଫେଣ୍ଟିଦେଇ
ଆମେ ସବୁ ଏକତ୍ରେ ଭୁଞ୍ଜିଲୁ ।
ପଲ୍ଲୀ ଏବଂ ସହରକୁ ଯୁକ୍ତକଲୁ
ଯୁକ୍ତହେଲୁ ନିର୍ଜନ ପର୍ବତ ସାନୁ, ହ୍ରଦ ଆଉ ଦେବାଳୟ ସହ
କେତେଗୋଟି ମୁହୂର୍ତ୍ତକୁ ଘଷି ମାଜି
ଆନନ୍ଦରେ ଚକ୍‌ଚକ୍ କଲୁ ।

ତା'ପରେ ଗୁଡ୍‌ବାଇ, ନମସ୍ତେ ନମସ୍ତେ
ମଟର ରହିଲା ଆସି
ପୁଣି ଆମେ ଫେରିଗଲୁ
ଯେ ଯାହାର ଖୋପ ଭିତରକୁ
ସେଇ ଆମ ବହୁବାର ଶଗଡ଼ଗୁଳାକୁ ।

□□□

ରମାକାନ୍ତ ରଥ

## ମାଷ୍ଟ୍ରାଣୀ

ଦୁଇ ଆଉ ଦୁଇ ମିଶି ଚାରି, ଏତେ ସ୍ପଷ୍ଟ ସତ୍ୟର କାହିଁକି
ଲୋଡ଼ା ମୋର ଯୌବନର ସାହାଯ୍ୟ ? ହେଲେ ନା ହେଲେ ମୁଁ
ପ୍ରୌଢ଼ା ହୋଇଯିବି ଏବଂ ମୋର ମୋଟା ଫ୍ରେମରୁ ମୋ
ପଶିଯାଇଥିବା ଗାଲ ଝୁଲୁଥିବ ବାଦୁଡ଼ିପରି, ବା
ମୁଁ ଘୋଷାରି ଚାଲୁଥିବି ଅସହଜ ପୃଥୁଳ ଶରୀର ।
ସେତେବେଳେ ମଧ୍ୟ ମତେ ଦୁଇ ଏବଂ ଦୁଇ ମିଶି ଚାରି
ବୋଲି କହିବାକୁ ହେବ । ମୁଁ ସତ୍ୟର ଖୁବ୍ ଦରକାର,
ସବୁବେଳେ, ମୁଁ ଜଣେ ଚାହିଁଛି ତାକୁ ? ବୋଧେ ବେଳେବେଳେ
ଗୋଟେ ଅଧେ ମିଛକଥା ମତେ ବେଶ୍ ଆରାମ ଦିଅନ୍ତେ ।
ଉତ୍କଳ କୋଉଠି ନୁହେଁ ସର୍ବାଧିକ ଶ୍ରେଷ୍ଠ ସବୁବେଳେ ।
ସେମାନେ କହନ୍ତି କିନ୍ତୁ ଭବିଷ୍ୟତମାନେ ମୋ ଦେଶର
ମୋ ହାତରେ ଅଛନ୍ତି ଓ ମାତା ପିତା ସବୁ ମୁଁ ତାଙ୍କର

ମୁଁ ଚାଲିଆସିଛି ଛାଡ଼ି ବହୁତ ଜନପଦ, ପ୍ରଥମତଃ ଘର
(ବୈକୁଣ୍ଠ ସମାନ ଅହା ଅଟେ ସେହି ଘର), ଦ୍ୱିତୀୟତଃ
ବାପଘର (ଭଲ ବୋଧେ ଲାଗିଥାନ୍ତା ବଡ଼ଲପାଟକୁ
ସାଦା କରି ପିନ୍ଧି ଲହି ଲହି ଚାଲିଥିଲେ, ବା ପାତଳ
ହଳଦିଆ କାଗଜରେ ପଢ଼ୁଥିଲେ ଗୀତ ସେ କାହିଁକି
ମଙ୍ଗଳ ବାଜଣା ବାଜେ, ବନ୍ଦେ ଦେବ ଚଇତାଳି ଏବଂ
କୁହୁକୁହୁ ଗାଏ ପିକ, ହେ ବିଦେଶୀ ଆମର ଅପାକୁ
ଚୋରି କରି ନିଅନା, ଯା ହେବାର ହେଲାଣି ଏଣିକି
ନବଦମ୍ପତିଙ୍କ ଶିରେ ଢାଳ ପ୍ରଭୁ ତମ କୃପାବାରି);
ତୃତୀୟତଃ, ମାତୃଭୂ (ମୁଁ ନୂଆ ନୂଆ ଡିଜାଇନ ଶିଖି
ଜାମା ପେଣ୍ଟ କରିଥାନ୍ତି ମିଷ୍ଟି ଚ୍ଛୁଇଁକାମରୁ ବି କିଛି);

ଚତୁର୍ଥତଃ, ପ୍ରେମ (ଏଙ୍କ ସାଙ୍ଗ ହୋଇ ମେଳା ଦେଖିଯିବା)
ଏପରି ଅନେକ କିଛି ଆଦ୍ୟ ଯୌବନରୁ ଗୁଣ୍ଡୁଅଛି ।
ସତ୍ୟର ବି ପ୍ରୟୋଜନ ଏ ଅବସ୍ଥା (ନିଃସ୍ୱାର୍ଥ ତ୍ୟାଗିଙ୍କ)
ସୁତରାଂ ମୁଁ ହୁଏତ ଦୁଇ ଏବଂ ଦୁଇ ମିଶି ଗୁରି
କହିବାକୁ ଉପଯୁକ୍ତ—ଆଜି, କାଲି ବର୍ଷ ବର୍ଷ ଧରି ।

ବହୁତ ହଳଦିବର୍ଣ୍ଣ ସକାଳ ଓ ଅସଂଖ୍ୟ ସଫେଦ୍
ଦ୍ୱିପ୍ରହର ଓ ବହୁତ ଅପରାହ୍ନ ନାରଙ୍ଗ ରଙ୍ଗର
ଫୁଟନ୍ତି ମୋ ବଗିଚାରେ ନାନା ରଙ୍ଗଫୁଲ ପରି । ଏହି
ବଗିଚା ସୁନ୍ଦର ଜାଗା—ପରିଷ୍କାର, ନିସ୍ତବ୍ଧ, ଶୀତଳ ।
ମୁଁ ସୁତରାଂ ଏଠି ବସେ ଫୁରୁସତ୍‌ବେଳେ, ଭଲଲାଗେ
ନ କହି ଦେଖିବା ଲାଗି, ଆଖି ପଛେ ହେଉ ଛଳଛଳ ।
ସବୁଠାରୁ ଭଲଲାଗେ କାମଦାମ ସାରି ଖାଇଦେଇ
ହାତକଣ୍ଟା ଖାଇବା ଓ ବଦଳାଇ ଲୁଗାପଟା
ପାନଖିଲେ ଖାଇ ଏକ ଚଉକିରେ ଏଠି ବସିବାକୁ ।
ଏ ବଗିଚା ପରିଷ୍କାର, ମାଟି ତାର ବାରମ୍ବାର ଖୋଳି
ଖସରେ ତା ଅଳିଆ ପୋଡ଼ି, ପୋକଜୋକ ଓ ଚେରମୂଳ
ସବୁ ନଷ୍ଟକରି ତାକୁ ମୁଁ ବସିବା ଲାଏକ୍ କରାଇ
ଏଠି ବସେଁ । ଆଉ କିଛି ଅର୍ଥ ନାହିଁ ଏଇ ବଗିଚାରେ ।
ଘରୁ ବନ୍ଦ ହୋଇଯିବା କମ୍ପା ଧୂଡ଼ୁ ଧୂଡ଼ୁ, ଚମତ୍କାର
ଅସ୍ୱସ୍ତି ଲାଗିବ ନାହିଁ । ଏ ବଗିଚା ବଡ଼ ଚମତ୍କାର ।
ଏ ବଗିଚା ଚମତ୍କାର, ଯଦିଓ ତା ଭିତରେ ବସିଲେ
ଗାଢ଼ସାରା ଜଣାଯିବ ମୁହୂର୍ତ୍ତିକ ପରି ଏହି କଥା
ନିଷ୍ପ୍ରଭ ଅନ୍ତରଞ୍ଜନ । ସତକଥା କୁହାଯାଉ, ପ୍ରତି
ସେକେଣ୍ଡ ଏଠାରେ ଲାଗେ ମିନିଟକ ପରି ଓ ପ୍ରତ୍ୟେକ
ମିନିଟ ଘଣ୍ଟାକ ପରି, ପ୍ରତି ଘଣ୍ଟା ବହୁତ ଶତାବ୍ଦୀ
ପରି ଲାଗେ, ମୋର ଗୋଟା ଛଟପଟ ଦେହ ମିଶିଯାଏ
ଓଷଦଙ୍କ ଦୂର ବାସ୍ନା ସାଙ୍ଗେ ଏବଂ ଅଦୃଶ୍ୟ ଅନେକ
ଝିଙ୍କାରିଙ୍କ ଶବ୍ଦ ସାଙ୍ଗେ ଖୁବ୍ ବେଗି ଦୁଇଟି ଘଣ୍ଟାରେ ।
ମତେ କେତେ ବର୍ଷ ହେଲା ? ପନ୍ଦର ବା ପଚିଶ ଷାଠିଏ ?
ମୁଁ ଜାଣେନା, ମୁଁ କେବଳ ଦେଖୁଅଛି ଏକ ଅବାନ୍ତର
ଯୌବନ ମିଳାଇଯାଏ ଲକ୍ଷ୍ୟହୀନ ଏକ ବାର୍ଦ୍ଧକ୍ୟରେ

ଯେପରି କୌଣସି ଚିତ୍ରେ ସ୍ତନ ଏକ ଦ୍ରବସ୍ଥା ନାଷ୍ଟର
ଚକ୍ଳାନ୍ତରେ ଆଲୋକିତ ଝରକାର କାଚ ଯାଙ୍କେ ମିଶେ
ଓ ତାଙ୍କ୍ରାରେ ପଛଆଡ଼ ମିଶିଯାଏ ସଫେଦ ପର୍ଦ୍ଦାରେ
ଯାହା ଝୁଲେ ଫୁଲ୍ ଫୁଲ୍ ପଶିଆସୁଥିବା ପବନରେ ।

ଏ ବଗିଚ୍ଛ ଚମତ୍କାର । ବେଳେ ବେଳେ ଭୁଲ୍ ହୋଇଯାଏ
ଯେ ଆଜିର ସତ୍ୟ ଖାଲି ଆଜିପାଇଁ ସତ୍ୟ ଅଟେ । ଦିନେ
ନା ଦିନେ ମୁଁ ଦୁଇ ଏବଂ ଦୁଇ ମିଶି ଚାରି କହିବାରୁ
କ୍ଷାନ୍ତ ହେବି । ଏ ଜଘନ୍ୟ ମଧ୍ୟଶଯ୍ୟା ବନ୍ଦ ହେବ ଏବଂ
ବନ୍ଦ ହେବ ଝାଳବୁହା, ବନ୍ଦ ହେବ ସବୁ କ୍ଲାନ୍ତି, ମୋର
ଗୋରି ଦେହେ ଲଜ୍ଜାକର କ୍ଷତଚିହ୍ନ ବନ୍ଦ ହେବ ଦିନେ ଅବା ଦିନେ
ଆକାଶକୁ ଝଲସାଇ ଫୁଟୁଥିବ ବାଣ ଓ ଦୂରରୁ
ଶୁଭୁଥିବ ବାଜଣା ଏକ ଆସ୍ତେ ଆସ୍ତେ ପାଖେଇ ଆସିବା
ଶୋଭାଯାତ୍ରାର ଓ ବନ୍ଧୁ ବନ୍ଧୁ ଗୃହିଣୀଆଙ୍କର
ଦାଗ ଖାନା ରନ୍ଧାହେବ, ମାଇପି ଓ ପିଲାଙ୍କ ଭିଡ଼ରେ
ପଡ଼ିଆ ଗହଳ ହେବ, କେତେ ପିଲା ବଢ଼ାଇବେ ହାତ
ଓ ମାଗିବେ ରଙ୍ଗ ରଙ୍ଗ ବେଲୁନ ଓ ଅନେକ ରଙ୍ଗରେ
ଅଙ୍କା ଇନ୍ଦ୍ରଧନୁ ଦେଖି ଆଁ କରି କେତେକ ରହିବେ
ଦିନେ ନା ଦିନେ, ହୁଏତ ଆଜିଠାରୁ ବହୁ ବର୍ଷ ପରେ ।
ମୋ ଦେଶର ଭବିଷ୍ୟତମାନେ କିନ୍ତୁ ଅଛନ୍ତି ହାତରେ
ମୋର, ତେଣୁ ପଛେ ରଖି ଅତୀତକୁ ହୁଅ ଆଗଭର,
ହରିଷ୍ଟିତ, ଜାଗ୍ରତ ଓ ସତ କହି ମଲେ ପଛେ ମର ।
ଆଗଭର ହୁଅ ହେ ମୋ କ୍ଲାନ୍ତ କ୍ଲାନ୍ତ ଆତ୍ମା ଆଗଭର,
ହୁଅ ହେ ମୋ କ୍ଲାନ୍ତ ଆତ୍ମା ହସ ନାହିଁ କିମ୍ବା କାନ୍ଦନାହିଁ
ଯଥେଷ୍ଟ ସମୟ ଅଛି ହସିବା ବା କାନ୍ଦିବା ଉଭୟରୁ
କିମ୍ବା ଯୁଗପତ୍ ହସ କିମ୍ବା କାନ୍ଦ ଉଭୟରେ ସମୟ
ତଥାପି ରହିବ ଏବଂ ହେ ମୋ କ୍ଲାନ୍ତ ଆତ୍ମା କିଛି ବେଳ
ବଗିଚ୍ଛରେ ରହିଯାଅ ଆଗଭର ହୋଇବା ପୂର୍ବରୁ ।
ଏ ବଗିଚ୍ଛ ଚମତ୍କାର । ଆରାମରେ ବସି ଗୋଡ଼ ରଖି
ଗୋଡ଼ରେ ଓ ଶୁଣ ଏବେ ଗୃହଆଡ଼େ କୋଳାହଳମୟ
ଆସୁଥିବ ଶୋଭାଯାତ୍ରା ବାଜଣାରେ ! ଏବେ ଦେଖ ଦିଶେ
ଶୋଭାଯାତ୍ରା ଏବଂ ତମେ ତା ସମ୍ମୁଖେ କି ସୁନ୍ଦର ବେଶେ !

ପିଲାମାନେ ମାରୁଛନ୍ତି ରଙ୍ଗ ରଙ୍ଗ ବେଲୁନ୍ କେବଳ
ତାଙ୍କ ହାତମାନ କଷ୍ଟା । ଏ ଦୃଶ୍ୟ କି ଅପୂର୍ବ ଛବିଳ !
ଆଜି ସ୍କୁଲ ଛୁଟି, ଆଜି ଶୋଭାଯାତ୍ରା ମାଷ୍ଟ୍ରାଣୀଙ୍କ ପାଇଁ
ଖଇ ଓ କଉଡ଼ି ପଡ଼େ, ସବୁ କିଛି ସରଯାଇନାହିଁ ।

□□□

ସୀତାକାନ୍ତ ମହାପାତ୍ର

## ନଈ ମୁହାଣ

କାନ୍ଦନା ପାଗଳୀ ପରି, ମଥା ପିଟି ବାଳ ମୁକୁଳେଇ
କହିକହି ହୋଇ ଆଉ କାନ୍ଦନା ଲୋ ବୋଉ ମୋ
ଅଲୁଣୀ ସମୁଦ୍ର । ସାକ୍ଷୀ ରଖି ଅନ୍ତରୀକ୍ଷ
ଗ୍ରହ, ତାରା, ନିସ୍ତବ୍ଧ ପବନ । ତୋ ବଣିକେଶନ
ଏଇ ଫେରୁଅଛୁ ଲହରୀର ଦାଢ଼େ କାଟି
ବାଲି, ମାଟି ଯୋଜନ ଯୋଜନ ।।

ଅନ୍ଧାରର ଶୂନ୍ୟ ଆକାଶରେ ତୋର ଆଖି ଖୋସି
କାନ୍ଦନା ମୋ ମା' ପରି, ମେଲା ଦାଣ୍ଡଘରେ ବସି
ଏକୁଣ୍ଡିରେ ଆଣ୍ଠୁ ରଖି; ଦୀପରୁଖା ଉପରର
ପିଲସଜେ ଶତ ସ୍ମୃତି ମଳବଣ ମିଛଟାରେ ଜାଳି
ତୋ ପୁଅ ଆସୁଛି ଫେରି, ପିଠିରେ ବୋକଚ୍ଚା ଆଉ
ହାତରେ ଲଣ୍ଠନ ଧରି ଲହରୀ-ଡଙ୍ଗାରେ ବସି
ତଳକୁ ମୁହଁକୁ ପୋଡି ହାଟରୁ ବାହୁଡ଼ି ।।

ତୋର ନଷ୍ଟେ ଭସ୍ମହେଲ,
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା
ଲୁହ ଆଉ ଦୀର୍ଘଶ୍ୱାସ ଦେବି ମୁଁ କାହାକୁ
ହଜିଲା ଦରବ ଖୋଜି ମୋ ବଣିକେଶନ ଗଲା
ସମତଳ ଭୂମି ଆଉ ନଗ୍ର, ଗ୍ରାମ,
ଜଗୁଟିଆ ବଣ, ବିଲ, ମରୁଭୂମି ପଥରଗୁହାକୁ

ଆଉ ଏଠି ଗଡ଼ ଯାଇ ବନ ହେଲା
ବନ ଯାଇ ପୁଣି ହେଲା ଗଡ଼
କେଁ ... ପରି କେବେ ହେମାଳ ନକ୍ଷତ୍ର ସବୁ
କାଉଗଲେ ଶୂନ୍ୟତାର ଅଣ୍ଡା ଉଦ୍ବେଗରେ
ମୋଟା କୁହୁଡ଼ି ଗୁଦର ଜାକଜୁକ ଘୋଡ଼ିହୋଇ
ଢମିମାଛ, ଶାମୁକା ଓ ଚଗେଣ୍ଡାଦଳ ଘାଣ୍ଟି କରି
ପୁଣି କେବେ ଉଦେହେଲେ ଦେବ ଦିବାକର
ଆଖି ମଳି ବିରକ୍ତିରେ; ମହାବ୍ୟେଷଭରେ ।।

ଆଉ ତୋ ବଣିକେଶନ କ'ଣ ଅବା ଖୋଜିଥିଲି ?
ଶବ୍ଦ ଓ ଅର୍ଥର ଯେତେ କ୍ଷୀଣ ନଈକୂଳ,
ତା' ଭିତରେ ବାଲିବନ୍ଧ,
ସାମାନ୍ୟ ସମ୍ପର୍କ ସ୍ଥାପି କାର୍ଯ୍ୟ-କାରଣରେ
ସ୍ୱାନସାର ନଜସ୍ୱ ଅନୁଭୂତିର ନକ୍ଷତ୍ର କାଁ ରେ
(ଅବଶ୍ୟ ଯମଦେବତା ଏଣୁତେଣୁ ଘୁରେଇ-ବୁଲେଇ
ନୂଆ ଔକଲଙ୍କ ପରି ନାନା ଉପଲକ୍ଷ୍ୟ ଦେଇ
ମିଛଟାରେ ଟ୍ରେଷ୍ଟପିଲା, ସରଳବିଶ୍ୱାସୀ ସେଇ
ନଚିକେତା ଆଗେ
ସେଇ କଥା ବଖାଣିଲେ ବାରଆଡ଼ୁ ଫେଣେଇ ଫେଣେଇ)
କଥା ଯାହା ଜନମ ଓ ମରଣର ଟିକି ପିଲାଖେଳ,
ହାଲ୍‌କା ହେଲେ ଦେହମନ ଆକାଶକୁ ବାମ୍ପ ହୋଇ
ଉଡ଼ିଯାଏ । ସାଇଁ ସାଇଁ ଘୂରିବୁଲି ଏଣେତେଣେ
ଭୁଗାବନ୍ତ ପରି, ପୁଣି କେବେ ପାହାଡ଼ରେ ମାଡ଼ ଖାଇ
ତଳେ ପଡ଼ି ବାଲିଶେଯେ ଶୁଏ ।।

ସବୁ ତେଣୁ ନଜ ପାଣି (ଯଦି ବା ସେ ପାଣି ହୁଏ ସଙ୍କେତେଦେ
ଅନ୍ୟ ଲୋକ ପାଣି) । ସବୁ ପାଣି ଜ୍ୱଳନ୍ତର ହୁତାଶନ
ଅଶ୍ରୁ ପ୍ଲାବନରେ ମିଶାମିଶି ପ୍ରତିରୂପ
ବସ୍ତୁ ଓ ଘଟନାହୀନ ଅନ୍ଧାରର ସ୍ତୂପ ।
ସମସ୍ତ ମୁହୂର୍ତ୍ତ ସଦା ବର୍ତ୍ତମାନ, ମୁକ୍ତିହୀନ ଘନ ଅନ୍ଧକୂପ ।।

ତେଣୁ ଯେତେ ଗଲା କାଲି
ସବୁ ସ୍ମୃତି ଆଜ ବନଟିର
ସମସ୍ତ ଅସଲ୍ଲା କାଲି ଆଜଟିର ସମ୍ଭାର ।।

ତେଣୁ ମୃତ୍ୟୁ କଷ୍ଟ ନୁହେଁ
ବେଶ୍ ଖାଲି ପବନରେ ଫୁଙ୍ଗୁଳା ଦେହରେ ତମେ ଛୁଉଁଥାଅ
ଏବଂ ଏଣେତେଣେ ଭାସି ମିଶିଯାଅ ନୀଳିମାର ଘଞ୍ଚ ବସ୍ତୁତରେ
କମ୍ପା ଧୀରେ ଧୀରେ ଯାଅ କରକା ପରି ମିଳେଇଁ
ନିଃଶବ୍ଦେ, ଚକଚକ ସୂର୍ଯ୍ୟକିରଣରେ ॥
(ସୂର୍ଯ୍ୟ···କିରଣରେ ॥)

ବୋକ୍ସରେ ଏଇମିତି ଅର୍ଥହୀନ, ଅଭିଜ୍ଞାନ, ମୋଟା ଖାତା
ସିଲଟ୍, ବସ୍ତାନି, ଝଣ୍ଡି, ଦିଆସିଲି, ପଣିକଣ୍ଠ ମାଳ
ଆଜି ମୋର ମନେପଡ଼େ, ହସ ଲାଗେ
ଯୋଉ ଦିନ ବେତର ଡରେ ଘୋଷିଲି
କୁକ୍କୁଟ ମୁଣ୍ଡେ ଅଛି ଚୂଳ
ମାଟି ଭିତରେ ବୃକ୍ଷମୂଳ ॥

ଯୋଜନ ଯୋଜନ ଧରି ଅନ୍ଧକାର
ଲୁହା ଆଉ ପଥରରୁ ଟାଣ
ଦେଢ଼ଫୁଟ ବ୍ୟାସାର୍ଦ୍ଧରେ ଜକଜକ ଏ ଆଲୁଅ
ନଭିଲି କି ନନଭିଲି ତୋ ପୁଅ ଲଣ୍ଠନ,
ତରଙ୍ଗ-ଡଙ୍ଗାରେ ଏଠି ମୁମୂର୍ଷ ଯେତେ ପଙ୍ଖୀ,
ମୂଷାମାଟି ଶଣ ଶଣ ମଙ୍ଗତଳେ ରୁଷି ଶୋଇଛନ୍ତି
ମହର୍ଷି ଗ୍ଲୁବାକ୍ ଏବଂ ବୁଦ୍ଧଦେବ, ଯିଶୁ ଖ୍ରୀଷ୍ଟ
ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ ॥

ବୋଉଲୋ, ତୁ ଭଲକଲୁ ଶଙ୍ଖାସୁର ନିଜ ପେଟେ ରଖି
ଚାରି ବେଦ ବୁକୁସ୍ରେ ବ୍ରହ୍ମା ଯାହା ବାନ୍ଧି ବୁଲୁଥିଲେ
ଠିକ୍ ଏଇ ମୋର ପରି, ବସ୍‌ଷ୍ଟାଣ୍ଡ ଫେରିବାଲା ପରି
ଗଳା ସରୁ ମୋଟ କରି ରଡ଼ି ରଡ଼ି
ପାନିଆ, ସିନ୍ଦୁର, ଫିତା, ଦାନ୍ତଖୁଣ୍ଟା, ଅମର ଜମ୍ବର
ସେଥିରୁ ମିଳିଲି ମୁକ୍ତି
ଜକଜକ ଆଲୁଅ ଓ ଜାଙ୍ଗଲୁ ଜାଙ୍ଗଲୁ ଯେତେ
ବୁଢ଼ିଆଣୀ ଜାଲ ପରି ଆତ୍ମଜ୍ଞାନ ବେଦନାରୁ
ଦ୍ରାବକରେ ଯେଉଁଥିରୁ
ତୋ ମାଁ-ସେନେହ, ଘନ ଆତ୍ମୀୟ ଅନ୍ଧାର ॥

ଆଜ ତେଣୁ ଶେଷ ମୋର ସ୍ମୃତି ଆଉ ସପନର ଅସଂଖ୍ୟ ସରଣି
ବସ୍ତୁ ନାମ ଧାମ ଆଉ ଘଟଣା ଓ ଦେଶ କାଳ ପାତ୍ର
ଘାଟଡଙ୍ଗା, ବେଲ ନଯବେ ରଡରଡ; ଆହୁଲା ଓ ମାଝିଗୀତ
ବାଲିଖେଳ, ଦୀପଦାନ, ଭଙ୍ଗାକାଚ, ଛୁଣା କନ୍ଥା
ଅନେକ କାହାଣୀ

ଅନେକ ମୃତ ପୃଥିବୀ । ମୃତ ସବୁ ବିମ୍ବ ଓ ପ୍ରତୀକ
ନିର୍ବାପିତ ବହ୍ନି ସ୍ମୃତି, ସ୍ୱପ୍ନ ସବୁ ଯିଏ ମଲେ
ମୁହୂର୍ତ୍ତର ସିଂହାସନ ନ ହେଉଣୁ କ୍ଲାନ୍ତ ଅଭିଷେକ ॥

ଏଠେ ତେଣୁ ଭଲଲାଗେ ଝାଉଁଗଛ ଅସ୍ପଷ୍ଟ କାନ୍ଦଣା
ପାତଳ କୁହୁଡ଼ି ଶିଡ଼ି ଫଲଲେ ପାଦ ପକେଇ
ସଞ୍ଜ ଯେବେ ଓହ୍ଲାଉଛି ଆକାଶରୁ ହୋଇ ବାଟବଣା,
ଏଠି ଆଜ ଭଲଲାଗେ ପାଲସ, ମସୃଣ ଏଇ କାଦୁଅରେ
ଚୋଫା ଧଲା ଓ ଧୂସର ପକ୍ଷୀର ମୁରୁଜ
ଜଆର ଯାଉଛି ଗୁଡ଼ି
ଛୁଡ଼ିଦେଇ ଶାମୁକା ଗେଣ୍ଡାମାନଙ୍କୁ ବାଲିପଙ୍କ ହତାଶାରେ
ଆକାଶରେ ବଦଳର ନାନାଜାତି ରଙ୍ଗ ଓ ପଦ୍ମକ ॥

ବାସ୍, ଆଉ ଟିକକରେ ଲୁଣିପାଣିଧୂଆ ଏଇ ଶିଉଳି ଓ କାଦୁଅରେ
ତାସବୁ ବିଂଚ୍ଛୁ ହୋଇଯିବେ
ଭାଙ୍ଗିଯିବ ଘୁଆଁ ର ଓ ବନ ଡାଲେ ପକ୍ଷୀଙ୍କର ହାଟ
ବିଂଚ୍ଛୁ ହୋଇ ହଜିଯିବ ଲଣ୍ଡନର ମୁମୂର୍ଷୁ ଆଲୁଅ ଆଉ
ପନକଣ୍ଡି, ଚକ୍ଖଡ଼ି, ଦଆସିଲ, ବନ୍ଦ୍ରାନ, ସିଲଟ୍ ।
ବୋଉଲେ, କାନ୍ଦନା ଆଉ ଅଛୁଣ୍ଡା ଅଙ୍କ ପସୃଶ
ଆଶା ରଖି ମିଛେ ଉତ୍ତରର । କଇଁକଇଁ ହେଇ ଆନ୍ଧ
କାନ୍ଦନା ପାଗଳୀ ମୋର ଅନ୍ଧୁଣୀ ସମୁଦ୍ର
ସାକ୍ଷୀ ରଖି ନୀରବ ଏ ଅନ୍ତରୀକ୍ଷ, ଗ୍ରହ, ତାରା, ଅଥସ୍ଥ ପବନ
ତୋ ବଂଶିକେଶନ ଏଇ ଲେଉଟାଣି ଆସୁଛି ଘରକୁ
ତୋ ପାଇଁ ଉତ୍ତର ଖୋଜ, ହାଟପୋଖ ବୁଲି ବୁଲି
ବାଲି ଓ ଅଙ୍ଗାର ଡେଇଁ ଯୋଜନ ଯୋଜନ ॥

□□□

ବ୍ରଜନାଥ ରଥ

## ଗୋଟିଏ ନିବେଦନ

ବିଂଶ ଶତାବ୍ଦୀର ହେ ବୁଦ୍ଧିଜୀବୀମାନେ !
ତୁମେ ତୁମର
ଜ୍ୱଳନ୍ତ ହୃଦୟ
ଭାରାକ୍ରାନ୍ତ ମନ
ଓ ବିପର୍ଯ୍ୟସ୍ତ ବିବେକକୁ ନେଇ
ମାତ୍ର ଅଳ୍ପ କେତୋଟି ମିନିଟ୍ ପାଇଁ
ଶରତ୍ତର ଏଇ ନୀଳ ପ୍ରାନ୍ତର ଉପରକୁ ଆସ ।
ଖୁବ୍ ଦୂର ଆକାଶରେ
ସାନ ସାନ ପିଲାଙ୍କର
ଛୋଟ ଛୋଟ କୌତୂହଳୀ ଆଖି ଭଳି
ତାରାଗୁଡ଼ିଏ ମିଟିମିଟି କରି
ପୃଥିବୀ ଆଡ଼କୁ ଅନାଇଛନ୍ତି;
ସେମାନଙ୍କୁ ଟିକିଏ ଦେଖ ।

ଝିଙ୍କାରୀଗୁଡ଼ାକ
ଘାସର ଟେବୁଲ ଉପରେ ବସି
ଝୁଣ୍ଝୁଣ୍ ଶବ୍ଦକରି
ଅତି ବେପରୱା ଭାବରେ
ଗୀତ ଗାଉଛନ୍ତି;
ସେମାନଙ୍କର ସେହି ଗୀତକୁ ଟିକିଏ ଶୁଣ,
ଆଉ, ଯଦି ପାର
ସେମାନଙ୍କ ସହିତ ଟିକିଏ ମନଖୋଲା
ଖୁସିଗପ ବି କର ।
ତା'ପରେ ମୋ କଥା ମାନି
ତୁମର ମନକୁ
ଗୁଡ଼ାଏ ଝଲମଲ ରଙ୍ଗୀନ୍ ପ୍ରଜାପତି କରି
ଉଡ଼ାଇ ଦିଅ ।

ତୁମର ହୃଦୟକୁ
ଗୁଡ଼ାଏ ମଖମଲ ସତେଜ ଫୁଲ୍ କରି
ଫୁଟାଇ ଦିଅ ।
ଆଉ ନିଜେ
ଶ୍ରେଷ୍ଠ ଶିଳ୍ପିଟିଏ ଭଳି
ସେହି ଉଡ଼ନ୍ତା ପ୍ରଜାପତିଗୁଡ଼ିକୁ
ଧରିବା ପାଇଁ
ସେହି ଫୁଟନ୍ତା ଫୁଲଗୁଡ଼ିକୁ
ତୋଳିବା ପାଇଁ
ଟଳଟଳ ପାଦରେ
ଢଳଢଳ ଘୁରିବୁଲ ।

ତା'ପରେ ଦେଖିବ
ପୃଥିବୀକୁ 'ବସନ୍ତ' ଆସିବାକୁ
ଖୁବ ବେଶି ଡେରି ନାହିଁ ।

